# BALIKAPATH

OR

# GIRL'S READER

## PART I.

BY

SREE SREE PATTAMAHADEVI
KANAKMANJARI DEVI,

**RANI OF KALLIKOTE AND ATAGADA.**

**DISTRICT GUNJAM.**

---

# ବାଳିକାପାଠ ।

ପ୍ରଥମ ଖଣ୍ଡ



---

ଗଞ୍ଜାମ ଜିଲ୍ଲାନ୍ତର୍ଗତ

ଖଲ୍ଲିକୋଟ ଏବ ଅଷ୍ଟଦୁର୍ଗାଧିଶ୍ୱରୀ

**ଶ୍ରୀ ଶ୍ରୀମତୀ କନକମଞ୍ଜରୀ ଦେବୀ**

କର୍ତ୍ତୃକ ପ୍ରଣୀତ ଓ ପ୍ରକାଶିତ ।

---

PRINTED AT THE RAY PRESS,
CUTTACK.
1897.

# ବିଜ୍ଞାପନ ।

ବାଳିକାମାନଙ୍କ ଶିକ୍ଷୋପଯୋଗୀ ପୁସ୍ତକ ଓଡ଼ିଆଭାଷାରେ ନ ଥିଲା । ବର୍ତ୍ତମାନ ଖଲ୍ଲିକୋଟ ଓ ଅଷ୍ଟଦୁର୍ଗାଧୀଶ୍ୱରୀ ସ୍ୱଦେଶବତ୍ସଳା ରାଣୀ ଶ୍ରୀଶ୍ରୀମତୀ କନକମଞ୍ଜରୀ ଦେବୀଙ୍କଦ୍ୱାରା ଏହି 'ବାଳିକାପାଠ' ସର୍ବପ୍ରଥମ ଲିଖିତ ହୋଇ ପ୍ରକାଶିତ ହେଲା । ରାଣୀ ମହୋଦୟା ଅଧୁନିକ ଓଡ଼ିଆ ଗୃହର ଅଭ୍ୟନ୍ତରର ଅବସ୍ଥା ସମ୍ୟକ୍ ଅବଗତ ହୋଇ ସେଥିର ସଂସ୍କାର ସକାଶ ଯାହା ୨ କର୍ତ୍ତବ୍ୟ, ଯଥାସ୍ଥାନରେ ଅତି ବିଶଦ ଭାବରେ ତାହା ନିର୍ଦ୍ଦେଶ କରିଅଛନ୍ତି । ସ୍ଥୂଳରେ ଏଥିର ବିଷୟଗୁଡ଼ିକ ଯେପରି ଉପଦେଶପ୍ରଦ, ଭାଷା ସେହିପରି ସରଳ ଓ ସୁବୋଧ ହୋଇଅଛି । ସୁତରାଂ ଏହା ଯେ ସର୍ବାଂଶରେ ବାଳିକାଶିକ୍ଷାର ଉପଯୋଗୀ ହୋଇଅଛି ଏଥିରେ ଅଣୁ ସନ୍ଦେହ ନାହିଁ ।

ରାଣୀ ମହୋଦୟା ରାଜଯେମା ଥିଲେ, ବର୍ତ୍ତମାନ ରାଜରାଣୀ ହୋଇ ଅଛନ୍ତି । ସେ ବାଲ୍ୟକାଳରୁ ସମ୍ପଦସୁଖଭୋଗରେ ଥାଇ ସୁଦ୍ଧା ଯେ ଏତେଦୂର ଶିକ୍ଷା କରିଅଛନ୍ତି ଏବଂ ସର୍ବସାଧାରଣ ଓଡ଼ିଆ ବାଳିକାଙ୍କୁ ସୁଶିକ୍ଷିତା କରିବା ପାଇଁ ଏପରି ଯତ୍ନ କରୁଅଛନ୍ତି, ଏହା ସାମାନ୍ୟ ପ୍ରଶଂସାର ବିଷୟ ନୁହେଁ ।

ରାଣୀ ମହୋଦୟା ଏ ପୁସ୍ତକକୁ ବିତରଣ କରିବାକୁ ମାନସ ବଳାଇଅଛନ୍ତି । ଏହି ପ୍ରଥମଖଣ୍ଡ ସାଧାରଣରେ ଆଦୃତ ହେଲେ, ଲିଖିତ ହୋଇ ରହିଥିବା ଦ୍ୱିତୀୟଖଣ୍ଡ ଅବିଳମ୍ବେ ପ୍ରକାଶ କରିବେ ।

ପୁସ୍ତକଗ୍ରାହକଗଣେହୁମାନେ ରାଣୀ ମହୋଦୟାଙ୍କ ନିକଟରୁ "ଖଲ୍ଲିକୋଟ, ଗଞ୍ଜାମ ଜିଲ୍ଲା" ଏହି ଠିକଣାରେ ନିବେଦନପତ୍ର ପଠାଇଲେ ପୁସ୍ତକ ପାଇ ପାରିବେ ।

ଶ୍ରୀ ଅଭନ୍ଦ ନାୟକ ।
ମେନେଜର ସତ୍ୟପ୍ରେସ,
କଟକ ।

ଓଡ଼ିଶାର ଶିକ୍ଷାବିଭାଗର ଡିରେକ୍ଟର ଇନ୍‌ସ୍‌ପେକ୍ଟର

## ରାୟ ବାହାଦୁର

## ଶ୍ରୀଯୁକ୍ତ ରାଧାନାଥ ରାୟ

### ମହୋଦୟ

ବାଳିକାପାଠ ସମ୍ବନ୍ଧରେ ନିମ୍ନଲିଖିତ ମନ୍ତବ୍ୟ ପ୍ରଦାନ କରିଅଛନ୍ତି—

"ବାଳିକାପାଠ" ପାଠ କରି ମୁଁ ନିରତିଶୟ ପ୍ରୀତିଲାଭ କଲି । ବୈଷୟିକ ଏବଂ ନୈତିକ ଶିକ୍ଷାର ଏପରି ସୁନ୍ଦର ସମବାୟ ଅନ୍ୟ କୌଣସି ବାଳିକାପାଠ୍ୟ ଗ୍ରନ୍ଥରେ ସୁଲଭ ନୁହେ । ନୀତିଗର୍ଭ, ପୌରାଣିକ ଏବଂ ଐତିହାସିକ ଆଖ୍ୟାୟିକାର ସନ୍ନିବେଶ ହେତୁରୁ ଗ୍ରନ୍ଥଖଣ୍ଡିକ ଯେମନ୍ତ ଉପଦେଶପ୍ରଦ ସେହିପରି କୌତୁକାବହ ମଧ୍ୟ ହୋଇଅଛି । "ବାଳିକାପାଠ" ପରି ବାଳିକାଙ୍କ ଶିକ୍ଷୋପଯୋଗୀ ପୁସ୍ତକ ବଙ୍ଗଭାଷାରେ ସୁଦ୍ଧା ଅଧିକ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଲିପିକୌଶଳଦ୍ୱାରା ନୀରସ ଶୁଷ୍କଶିକ୍ଷା ଏ ଗ୍ରନ୍ଥରେ ମନୋହର ଆକାର ଧାରଣ କରିଅଛି । ଏ ପୁସ୍ତକର ବହୁଳ ପ୍ରଚାରଦ୍ୱାରା ଓଡ଼ିଶାର ସ୍ତ୍ରୀଶିକ୍ଷାର ସମ୍ୟକ୍ ଶ୍ରେୟୋଲାଭର ସମ୍ଭାବନା । ଉତ୍କଳୀୟ ବାଳିକାମାନଙ୍କୁ ସୁଗୃହିଣୀ ଏବଂ ସୁମାତା କରାଇବାର ପୁସ୍ତକର ଉଦ୍ଦେଶ୍ୟ ଅଟେ; ଏବଂ ପୁସ୍ତକର ବିଷୟ ଏବଂ ଭାଷା ସେହି ଉଦ୍ଦେଶ୍ୟର ପୁଣି ଦେଶ, କାଳ, ପାତ୍ରର ସମ୍ପୂର୍ଣ୍ଣ ଉପଯୋଗୀ ହୋଇଅଛି ।

"ବାଳିକାପାଠ" ପ୍ରତ୍ୟେକ ଓଡ଼ିଆ ବାଳିକାବିଦ୍ୟାଳୟର ପାଠ୍ୟପୁସ୍ତକରୂପେ ବ୍ୟବହୃତ ହେବାର ବାଞ୍ଛନୀୟ । ବାଳିକାବିଦ୍ୟାଳୟରେ

।

ପାରତୋଷିକ ଦେବା ସ୍ୱୀକାର ଏପରି ସୁନ୍ଦର ପୁସ୍ତକ ଓଡ଼ିଆ ଭାଷାରେ ଦୃଷ୍ଟପୂର୍ବ ନାହିଁ ।

“ବାଳକାପାଠ”ର ୨ୟ ଖଣ୍ଡ ଦେଖିବାର ପ୍ରତୀକ୍ଷାରେ ମୁଁ ଅଣାକୃତ ହୋଇ ରହିଲି ।

କଟକ
୧୮୯-୯୭

ଶ୍ରୀ ରାଧାନାଥ ରାୟ ।

# ସୂଚୀପତ୍ର ।



# ବାଳିକାପାଠ ।

---

## ପ୍ରଥମ ସନ୍ଧ୍ୟା ।

## ରାମାୟଣ ।

---

### ଆଈ ନାତୁଣୀ ।

ଲୀଳାବତୀ—ଆଈ, ଆଜି କାହାଣୀ କହିବ ପରା ?

ନିଶାମଣି—ଆଈ, ସାଧବ-ବୋହୂ କଥା କହ ।

ପଦ୍ମାବତୀ—ନା ଆଈ, ଆଉ କିଛି କହ ।

ଆଈ—ଆଚ୍ଛା, ତୁମ୍ଭେମାନେ ରାମାୟଣ ଏବଂ ମହାଭାରତର କଥା ଶୁଣିଛ ?

ଲୀଳା—ନା ।

ପଦ୍ମା—ଆଈ, ଆଜି ମହାଭାରତ କଥା କହ ।

ନିଶା—ନା, ଆଈ, ରାମାୟଣ କଥା କହ ।

ଆଈ—ଆଜି ରାମାୟଣ କଥା କହିବି । ଏ ଦେଶରେ ଜନ୍ମ ହୋଇ ଯେ ରାମାୟଣ ଓ ମହାଭାରତର କଥା ନ ଜାଣେ ତାହାର ଜନ୍ମ ବୃଥା । ଯେଉଁ ଦେଶରେ ଯେଉଁ ପ୍ରାଚୀନ ଗ୍ରନ୍ଥ ଅଛି ସେମାନଙ୍କ

ମଧ୍ୟରୁ କୌଣସି ଗ୍ରନ୍ଥ ରାମାୟଣ ଅବା ମହାଭାରତ ସଙ୍ଗେ ତୁଲ୍ୟ ନୁହେ । ରାମାୟଣରେ ରାମଚନ୍ଦ୍ର ସୀତାଙ୍କ ଚରିତ୍ର ବର୍ଣ୍ଣିତ ହୋଇଅଛି ।

"ପ୍ରାଚୀନ କାଳରେ ଅଯୋଧ୍ୟା ଦେଶରେ ଏକ ପରାକ୍ରମୀ ରାଜା ଥିଲେ, ତାଙ୍କ ନାମ ଦଶରଥ । ଦଶରଥଙ୍କର କୌଶଲ୍ୟା, କୈକେୟୀ ଏବ ସୁମିତ୍ରା ନାମରେ ତିନି ରାଣୀ ଥିଲେ । ମହାରାଜା ଦଶରଥଙ୍କର କୌଶ-ଲ୍ୟାଙ୍କ ଗର୍ଭରୁ ରାମଚନ୍ଦ୍ର, କୈକେୟୀଙ୍କ ଗର୍ଭରୁ ଭରତ, ଏବ ସୁମିତ୍ରାଙ୍କ ଗର୍ଭରୁ ଲକ୍ଷ୍ମଣ ଓ ଶତ୍ରୁଘ୍ନ ଏହି ଚାରି ପୁତ୍ର ଜନ୍ମଗ୍ରହଣ କରିଥିଲେ । ଲକ୍ଷ୍ମଣ ରାମଚନ୍ଦ୍ରଙ୍କର ଏବ ଶତ୍ରୁଘ୍ନ ଭରତଙ୍କର ସହଚର ଥିଲେ ।

ଦଶରଥ ପୁତ୍ରମାନଙ୍କୁ ଶିକ୍ଷା ଦେବା ସକାଶେ କୁଳଗୁରୁ ବଶିଷ୍ଠଙ୍କୁ ନିଯୁକ୍ତ କଲେ । ବଶିଷ୍ଠ ରାଜପୁତ୍ରମାନଙ୍କୁ ଶାସ୍ତ୍ରାଦିରେ ସୁନିପୁଣ କରାଇ ଧନୁର୍ବେଦାଦି ଅସ୍ତ୍ରଶିକ୍ଷା ପ୍ରଦାନ କଲେ । ରାଜପୁତ୍ରମାନେ କୈଶୋରା-ବସ୍ଥାରେ ଅଦ୍ୱିତୀୟ ବୀର ବୋଲି ଗଣ୍ୟ ହେଲେ । ଚାରି ଭାଇଙ୍କ ମଧ୍ୟରେ ରାମଚନ୍ଦ୍ର, ଦଶରଥ ଏବ ଜନସାଧାରଣଙ୍କର ଅତ୍ୟନ୍ତ ପ୍ରିୟ ହେଲେ ।

ଏହି ସମୟରେ ରାକ୍ଷସମାନେ ଅତ୍ୟନ୍ତ ଅତ୍ୟାଚାର କରୁଥିବାରୁ ମୁନିମାନେ ନିର୍ବିଘ୍ନରେ ଯଜ୍ଞାଦି କାର୍ଯ୍ୟ କରି ପାରୁ ନ ଥିଲେ । ଦିନେ ମୁନିଶ୍ରେଷ୍ଠ ବିଶ୍ୱାମିତ୍ର ଦଶରଥଙ୍କ ନିକଟରେ ଉପସ୍ଥିତ ହୋଇ, ମୁନିମା-ନଙ୍କୁ ନିର୍ବିଘ୍ନ କରିବା ଉଦ୍ଦେଶ୍ୟରେ, ରାମ ଓ ଲକ୍ଷ୍ମଣଙ୍କୁ ସଙ୍ଗେ ନେଇ ମୁନିମାନଙ୍କ ଆଶ୍ରମକୁ ଯାତ୍ରା କଲେ । ରାମଚନ୍ଦ୍ର ବାଟରେ ଯାଉଁ ତାଡ଼କା ରାକ୍ଷସୀକୁ ବଧ କଲେ । ତାହା ଉତ୍ତାରୁ ମୁନିମାନଙ୍କ ଆଶ୍ରମରେ ଉପସ୍ଥିତ ହୋଇ ରାମ ଓ ଲକ୍ଷ୍ମଣ ରାକ୍ଷସମାନଙ୍କ ସଙ୍ଗେ ଘୋରତର ଯୁଦ୍ଧ କଲେ । ଯୁଦ୍ଧରେ ରାକ୍ଷସମାନଙ୍କ ମଧ୍ୟରୁ ଅନେକ ନିହତ ହେଲେ ଏବ କେତେକ ପଳାଇ ପ୍ରାଣରକ୍ଷା କଲେ । ଏହି ରାକ୍ଷସମାନଙ୍କ

ମଧ୍ୟରେ ତାଡ଼କାପୁତ୍ର ମାରୀଚ ପ୍ରଧାନ ଥିଲେ । ମାୟାବିଶ୍ରେଷ୍ଠ ମାରୀଚ ରାମଚନ୍ଦ୍ରଙ୍କ ଅସ୍ତ୍ରରେ କ୍ଷତବିକ୍ଷତାଙ୍ଗ ହୋଇ ପଳାୟନ କରି ଉପସ୍ଥିତ ରେ ନିଯୁକ୍ତ ହେଲା ।

ମିଥିଳା ରାଜ୍ୟରେ ଜନକରାଜାଙ୍କର ସୀତା ନାମରେ ଏକ ପରମା ସୁନ୍ଦରୀ କନ୍ୟା ଥିଲେ । ଜନକରାଜାଙ୍କ କନ୍ୟା ବୋଲି ଜାନକୀ, ମିଥିଳାରେ ଜନ୍ମ ବୋଲି ମୈଥିଳୀ ପ୍ରଭୃତି କେତେଗୁଡ଼ିଏ ସୀତାଙ୍କର ଅନ୍ୟ ନାମ ଥିଲା । ରାଜା ଜନକ ଶିବଙ୍କର ଏକ କଠିନ ଧନୁକ ଆଣି, ସେହି ଧନୁକୁ ଯେ ଭାଙ୍ଗିବ ତାହାଙ୍କୁ କନ୍ୟା ଦାନ କରିବେ ବୋଲି ପଣ କରିଥିଲେ । ଭାରତବର୍ଷର ରାଜାମାନେ ସୀତାଙ୍କ ଅପୂର୍ବ ରୂପଲାବଣ୍ୟ କଥା ଶ୍ରବଣ କରି, ଧନୁର୍ଭଙ୍ଗ କରି ସୀତାଙ୍କ ପାଣିଗ୍ରହଣ ଆକାଂକ୍ଷେ ମିଥିଳାକୁ ଆଗମନ କରିଥିଲେ । ବିଶ୍ୱାମିତ୍ର ରାମ ଓ ଲକ୍ଷ୍ମଣଙ୍କୁ ଘେନି ଧନୁର୍ଭଙ୍ଗ ଦର୍ଶନ ଉଦ୍ଦେଶ୍ୟରେ ମିଥିଳାକୁ ଯାତ୍ରା କଲେ । ଆଗନ୍ତୁକ ରାଜାମାନଙ୍କ ମଧ୍ୟରୁ କେହି ଧନୁର୍ଭଙ୍ଗ କରିବାକୁ ସକ୍ଷମ ହେଲେ ନାହିଁ । କେବଳ ରାମଚନ୍ଦ୍ର ସେହି ଦୁର୍ଜ୍ଜୟ ଧନୁକୁ ଭାଙ୍ଗି ସୀତାଙ୍କ ପାଣିଗ୍ରହଣ କଲେ । ରାମଚନ୍ଦ୍ର ସୀତାଙ୍କ ସହ ଅଯୋଧ୍ୟାକୁ ପ୍ରତ୍ୟାଗମନ କାଳରେ ବାଟରେ ପର୍ଶୁରାମଙ୍କ ଦର୍ପ ଚୂର୍ଣ୍ଣ କଲେ ।

ରାମଚନ୍ଦ୍ର ଅଯୋଧ୍ୟାରେ କିଛିଦିନ ସୁଖରେ କାଳହରଣ କଲା ଉତ୍ତାରୁ ଜରାଗ୍ରସ୍ତ ବୃଦ୍ଧରାଜା ଦଶରଥ ରାଜକାର୍ଯ୍ୟରେ ଅଶକ୍ତ ହୋଇ ସର୍ବଗୁଣସମ୍ପନ୍ନ ରାମଚନ୍ଦ୍ରଙ୍କୁ ରାଜ୍ୟ ପ୍ରଦାନର ସଙ୍କଳ୍ପ କଲେ । ରାମଚନ୍ଦ୍ରଙ୍କ ଅଭିଷେକର ପୂର୍ବଦିବସରୁ ଅଯୋଧ୍ୟାବାସୀ ଆନନ୍ଦସାଗରରେ ନିମଗ୍ନ ହୋଇ ମହୋତ୍ସବରେ ପ୍ରବୃତ୍ତ ହେଲେ । କୌଶଲ୍ୟା ପୁତ୍ରଙ୍କ ଏବଂ ସୀତା ପତିଙ୍କ ହିତକାମନାରେ ବିବିଧ ବ୍ରତ ଏବଂ ଦାନାଦି କାର୍ଯ୍ୟରେ ରତ ହେଲେ ।

ପୂର୍ବେ ରାଜା ଦଶରଥ କୈକେୟୀଙ୍କୁ ଯୋଡ଼ିଏ ବର ପ୍ରଦାନ କରିବାକୁ ଅଙ୍ଗୀକାର କରିଥିଲେ । ବର୍ତ୍ତମାନ କୈକେୟୀ ରାମଚନ୍ଦ୍ରଙ୍କ ରାଜ୍ୟାଭିଷେକ କଥା ଶ୍ରବଣ କରି ବିଷଣ୍ଣା ହୋଇ, ଦଶରଥଙ୍କ ପୂର୍ବ ଅଙ୍ଗୀକୃତ ବର ସାହାଯ୍ୟରେ ସ୍ୱୀୟ ପୁତ୍ର ଭରତଙ୍କୁ ରାଜ୍ୟ ପ୍ରଦାନର ସଙ୍କଳ୍ପ କଲେ । କୈକେୟୀ ଦଶରଥଙ୍କ ଠାରେ ଅଙ୍ଗୀକୃତ ବରଦ୍ୱୟ ପ୍ରାର୍ଥନା କରି ଏକ ବରରେ ଭରତଙ୍କ ରାଜ୍ୟାଭିଷେକ ଏବଂ ଅନ୍ୟ ବରରେ ରାମଚନ୍ଦ୍ରଙ୍କ ଚତୁର୍ଦ୍ଦଶ ବର୍ଷ ବନଗମନ ପ୍ରାର୍ଥନା କଲେ । ଦଶରଥ ରାମଚନ୍ଦ୍ରଙ୍କ ବନ ଗମନ ପରିବର୍ତ୍ତରେ ଅନ୍ୟ କିଛି ପ୍ରାର୍ଥନା କରିବାକୁ କୈକେୟୀଙ୍କୁ ବହୁ ଅନୁନୟ ବିନୟ କଲେ ସୁଦ୍ଧା, କୈକେୟୀ ଅନ୍ୟ କୌଣସି ବର ଗ୍ରହଣ କରିବାକୁ ସମ୍ମତା ହେଲେ ନାହିଁ । ଦଶରଥ କୈକେୟୀଙ୍କ ନିଷ୍ଠୁର ବ୍ୟବହାରରେ କାତର ହୋଇ ପ୍ରାଣାଧିକ ପ୍ରିୟତମ ପୁତ୍ର ରାମଚନ୍ଦ୍ରଙ୍କ ସକାଶେ କରୁଣସ୍ୱରରେ ବିଳାପ କରି ରଜନୀ ଅତିବାହିତ କଲେ ।

ପ୍ରାତଃକାଳରେ ରାମଚନ୍ଦ୍ର ପିତାଙ୍କ ସାକ୍ଷାତ୍ କରିବାକୁ ଯାଇ କୈକେୟୀଙ୍କ ମୁଖରୁ ଏହି ସମସ୍ତ ବିଷୟ ଅବଗତ ହେଲେ । ସେ ଶୋକପରାୟଣ ପିତାଙ୍କୁ ସାନ୍ତ୍ୱନା କରି, ପିତୃସତ୍ୟ ପାଳନ ଉଦ୍ଦେଶ୍ୟରେ ଚତୁର୍ଦ୍ଦଶ ବର୍ଷ ବନବାସ କରିବାକୁ ସମ୍ମତ ହେଲେ । ତଦନନ୍ତର ପିତାଙ୍କ ଠାରୁ ବିଦାୟ ଗ୍ରହଣ କରି, ମାତାଙ୍କ ନିକଟରେ ସମସ୍ତ ବିଷୟ ବର୍ଣ୍ଣନ କଲେ । କୌଶଲ୍ୟା ରାମଚନ୍ଦ୍ରଙ୍କୁ ବନଗମନରୁ ନିରସ୍ତ କରିବା ଉଦ୍ଦେଶ୍ୟରେ ବହୁଯତ୍ନ କଲେ ସୁଦ୍ଧା, ରାମଚନ୍ଦ୍ର ପିତୃସତ୍ୟ ଭଙ୍ଗ ହେବା ଭୟରେ କ୍ଷାନ୍ତ ହେଲେ ନାହିଁ ।

ସୀତା ରାମଚନ୍ଦ୍ରଙ୍କଠାରୁ ବନବାସ ବାର୍ତ୍ତା ଶ୍ରବଣ କରି, ପତିଙ୍କ ସହଚାରିଣୀ ହେବା ସକାଶେ ପ୍ରାର୍ଥନା କଲେ । ରାମଚନ୍ଦ୍ର ସୀତାଙ୍କ

କହିଲେ—"ତୁମ୍ଭେ ରାଜକନ୍ୟା ଏବଂ ରାଜାଙ୍କର ପୁତ୍ରବଧୂ ହୋଇ କପର ବନବାସର କଷ୍ଟ ସହ୍ୟ କରବ ? ଯେ ଅବାଲ୍ୟରୁ ରାଜପ୍ରାସାଦରେ ରହି ରାଜଭୋଗରେ ବର୍ଦ୍ଧିତ ହୋଇଅଛ ସେ କପର ବୃକ୍ଷଚ୍ଛାୟା ଆଶ୍ରୟ ଏବଂ ଫଳ ମୂଳ ଭକ୍ଷଣ କର ରହିବ ? ଅରଣ୍ୟରେ ହିଂସ୍ରଜନ୍ତୁ ଏବଂ ରାକ୍ଷସମାନେ ବଚରଣ କରନ୍ତି, ତୁମ୍ଭର କ ସେମାନଙ୍କୁ ଭୟ ହେଉ ନାହିଁ ?"

ସୀତା କହିଲେ—"ମୋର ପତି ଯେବେ ବନବାସୀ ହେଲେ ମୋର ରାଜପ୍ରାସାଦ ଓ ରାଜଭୋଗରେ କ ହେବ ? ତୁମ୍ଭ ପର ସ୍ୱାମିର ଆଶ୍ରୟ ପାଇଲେ କେଉଁ ସ୍ତ୍ରୀର ହିଂସ୍ରଜନ୍ତୁ ଓ ରାକ୍ଷସମାନଙ୍କଠାରେ ଭୟ ହୁଏ ? ସ୍ତ୍ରୀର ପତି ବ୍ୟତୀତ ଗତି ନାହିଁ, ବନବାସରେ ମୁଁ ତୁମ୍ଭର ସେବା କରବ, ତୁମ୍ଭେ ଯେବେ ମତେ ସଙ୍ଗରେ ନ ନେବ ତେବେ ମୁଁ ନିଶ୍ଚୟ ପ୍ରାଣ-ତ୍ୟାଗିନୀ ହେବ ।

ଏହି କଥା ଶୁଣି ରାମଚନ୍ଦ୍ର ସୀତାଙ୍କୁ ସଙ୍ଗରେ ଯିବାକୁ ନିଷେଧ କର ପାରିଲେ ନାହିଁ । ଲକ୍ଷ୍ମଣ ମଧ୍ୟ ରାମଚନ୍ଦ୍ରଙ୍କର ଅନୁଗମନ କଲେ । ରାମଚନ୍ଦ୍ରଙ୍କ ବନଗମନ ଉତ୍ତାରୁ ଦଶରଥ ଶୋକରେ ଆକୁଳ ହୋଇ ପ୍ରାଣତ୍ୟାଗ କଲେ । ଏହି ସମୟରେ ଭରତ ଓ ଶତ୍ରୁଘ୍ନ ମାତୁଳାଳୟ-ରେ ଅବସ୍ଥାନ କରୁଥିଲେ । ଭରତ ଓ ଶତ୍ରୁଘ୍ନ ଭ୍ରାତୃଦ୍ୱୟ ଅଯୋଧ୍ୟାକୁ ଆଗମନ କର ପିତାଙ୍କର ସତ୍କାର କଲେ । ତହିଁ ଉତ୍ତାରୁ ଭ୍ରାତୃଦ୍ୱୟ, ରାମଚନ୍ଦ୍ରଙ୍କୁ ବାହୁଡ଼ାଇ ଆଣିବାକୁ ଯାତ୍ରା କଲେ; ମାତ୍ର ରାମଚନ୍ଦ୍ର ବାହୁଡ଼ିଲେ ନାହିଁ । ଭରତ ଅଯୋଧ୍ୟାକୁ ପ୍ରତ୍ୟାଗମନ କର ରାମ-ଚନ୍ଦ୍ରଙ୍କ କାଷ୍ଠପାଦୁକାକୁ ସିଂହାସନରେ ସ୍ଥାପନ କର, ଅଗ୍ରଜଙ୍କ ପ୍ରତ୍ୟା-ଗମନ ପର୍ଯ୍ୟନ୍ତ ରାଜ୍ୟପାଳନ କଲେ ।

ରାମଚନ୍ଦ୍ର ଦଣ୍ଡକାରଣ୍ୟରେ ଗୋଦାବରୀତୀରବର୍ତ୍ତୀ ପଞ୍ଚବଟୀ ନାମକ-ସ୍ଥାନରେ ପର୍ଣ୍ଣକୁଟୀର ନିର୍ମ୍ମାଣ କରି କେତେକ ବର୍ଷ ପରମସୁଖରେ କାଳଯାପନ କଲେ । ସୀତା ପତିସହବାସସୁଖ ପ୍ରାପ୍ତ ହୋଇ ବନ-ବାସର କଷ୍ଟ ବିସ୍ମୃତ ହେଲେ । ଲକ୍ଷ୍ମଣ ଫଳମୂଳ ଆହରଣ ଓ ମୃଗୟା ପ୍ରଭୃତି କରି ଭ୍ରାତୃ ଓ ଭ୍ରାତୃଜାୟାର ମନୋରଞ୍ଜନ କରୁଥିଲେ । ରାମ-ଚନ୍ଦ୍ର ବନବାସକାଳରେ ରାକ୍ଷସମାନଙ୍କୁ ଦମନ କରିବାରୁ ବନବାସୀ ଋଷିମାନେ ପରମସୁଖରେ କାଳହରଣ କଲେ । ରାମଚନ୍ଦ୍ର ଏହିପରି ତ୍ରୟୋଦଶ ବର୍ଷ ସୁଖରେ ବନବାସ କଲେ ।

ଲଙ୍କାପତି ରାକ୍ଷସରାଜ ରାବଣ ସୀତାଙ୍କର ଅପୂର୍ବ୍ବ ରୂପ-ଲାବଣ୍ୟ କଥା ଶ୍ରବଣ କରି ମାୟାବୀ ମାରୀଚକୁ ସଙ୍ଗେ ଘେନି ସୀତାଙ୍କୁ ହରଣ କରିବା ସକାଶେ ପଞ୍ଚବଟୀକୁ ଆଗମନ କଲା । ମାରୀଚ ବିଚିତ୍ର ମାୟା-ମୃଗରୂପ ଧାରଣ କରି ରାମଚନ୍ଦ୍ରଙ୍କ କୁଟୀର ସମ୍ମୁଖରେ ବିଚରଣ କଲା । ସୀତା ସେହି ବିଚିତ୍ର ମୃଗକୁ ଦେଖି ରାମଚନ୍ଦ୍ରଙ୍କୁ କହିଲେ—"ତୁମ୍ଭର ମୋଠାରେ ସ୍ନେହ ଥିଲେ ଏହି ମୃଗକୁ ମାରି ଏହାର ଚର୍ମ୍ମ ମତେ ଆଣି ଦିଅ" । ରାମଚନ୍ଦ୍ର ମୃଗର ଅନୁସରଣ କରି ଦୂରକୁ ଯିବାରୁ ଲକ୍ଷ୍ମଣ ଓ ସୀତାଙ୍କର ଅଦୃଶ୍ୟ ହେଲେ । ମାରୀଚ ରାମଚନ୍ଦ୍ରଙ୍କ ଶରରେ ଆହତ ହୋଇ—"ଭାଇ ଲକ୍ଷ୍ମଣ ମତେ ରକ୍ଷା କର" କହି ପ୍ରାଣତ୍ୟାଗ କଲା । ସୀତା ତାହା ଶୁଣି, ରାମଚନ୍ଦ୍ର ବିପଦରେ ପଡ଼ିଅଛନ୍ତି ମନେ କରି ଲକ୍ଷ୍ମ-ଣଙ୍କୁ ପ୍ରେରଣ କରି ଶୂନ୍ୟକୁଟୀରରେ ଅବସ୍ଥାନ କଲେ । ରାବଣ ଏହି ସୁଯୋଗରେ କୁଟୀରରେ ଉପସ୍ଥିତ ହୋଇ ସୀତାଙ୍କୁ ରଥରେ ବସାଇ ଲଙ୍କାକୁ ପ୍ରସ୍ଥାନ କଲା । ସ୍ତ୍ରୀଏ ପତ୍ନୀ କରିବା ଉଦ୍ଦେଶ୍ୟରେ ରାବଣ ସୀତାଙ୍କୁ ଅନେକ ପ୍ରଲୋଭନ ଦେଖାଇଲେ ସୁଦ୍ଧା ପତିବ୍ରତା ସୀତାଙ୍କ ମନ କୌଣସି ପ୍ରକାରେ ବିଚଳିତ ହେଲା ନାହିଁ । ସୀତା ଲଙ୍କାର

ଅଶୋକବନରେ ଅବରୁଦ୍ଧା ରହି ସର୍ବଦା ରାମଚନ୍ଦ୍ରଙ୍କ ଗୁଣମାନ ସ୍ମରଣ କରି ବିଳାପ କଲେ ।

ରାମଚନ୍ଦ୍ର ଲକ୍ଷ୍ମଣ ସହ କୁଟୀରରେ ଉପସ୍ଥିତ ହୋଇ ସୀତାଙ୍କୁ ନ ଦେଖି ବହୁ ବିଳାପ କରି ନାନାସ୍ଥାନରେ ତାହାଙ୍କୁ ଅନ୍ୱେଷଣ କରି ପ୍ରାପ୍ତ ହେଲେ ନାହିଁ । ପରେ ପିତୃସଖା ଜଟାୟୁଙ୍କ ନିକଟରୁ ରାବଣ ସୀତାଙ୍କୁ ନେଇ ଯାଇଥିବାର ସମ୍ବାଦ ପାଇଲେ । ରାମ ଲକ୍ଷ୍ମଣ ସହ ଋଷ୍ୟମୂକ ପର୍ବତରେ ଉପସ୍ଥିତ ହୋଇ କପିରାଜ ସୁଗ୍ରୀବଙ୍କ ସଙ୍ଗେ ମିତ୍ରତା ସ୍ଥାପନ କଲେ । ତଦନନ୍ତର ସୁଗ୍ରୀବଙ୍କ ଅଗ୍ରଜ ମହାବୀର ବାଳିଙ୍କୁ ବଧ କରି, କିଷ୍କିନ୍ଧ୍ୟାର ସିଂହାସନରେ ସୁଗ୍ରୀବଙ୍କୁ ଅଭିଷିକ୍ତ କଲେ । ସୁଗ୍ରୀବ ଚତୁର୍ଦ୍ଦିଗକୁ ଦୂତ ପ୍ରେରଣ କରି ସୀତାଙ୍କ ଅନ୍ୱେଷଣ କଲେ । ସୁଗ୍ରୀବାନୁଚର ମହାବୀର ହନୁମାନ ଲଙ୍କାର ଅଶୋକବନରେ ସୀତାଙ୍କୁ ଦେଖି ଆସି ସମ୍ବାଦ ଦେବାରୁ, ରାମଚନ୍ଦ୍ର ଅସଂଖ୍ୟ କପିସୈନ୍ୟ ସହ ଲଙ୍କାରେ ଉପସ୍ଥିତ ହେଲେ । ଏହି ସମୟରେ ରାବଣାନୁଜ ଧାର୍ମ୍ମିକବର ବିଭୀଷଣ ରାମଚନ୍ଦ୍ରଙ୍କ ସହ ମିତ୍ରତାସୂତ୍ରରେ ଆବଦ୍ଧ ହେଲେ । ବିଭୀଷଣ ସୀତା ଉଦ୍ଧାରରେ ସାହାଯ୍ୟ କରିବାକୁ ଅଙ୍ଗୀକାର କରିବାରୁ, ରାମଚନ୍ଦ୍ର ରାବଣକୁ ନିହତ କରି ବିଭୀଷଣଙ୍କୁ ଲଙ୍କାର ସିଂହାସନରେ ଅଭିଷିକ୍ତ କରିବାକୁ ପ୍ରତିଜ୍ଞା-ବଦ୍ଧ ହେଲେ । ରାମ ଓ ରାବଣ ସୈନ୍ୟର ବହୁଦିନବ୍ୟାପୀ ଘୋରତର ଯୁଦ୍ଧ ହେଲା । ଏହି ସମରରେ ଉଭୟପକ୍ଷରୁ ଅନେକ ବୀର ନିହତ ହେଲେ । ପରିଶେଷରେ ରାମଚନ୍ଦ୍ର ରାବଣକୁ ସବଂଶରେ ନିହତ କରି ସୀତାଙ୍କୁ ଉଦ୍ଧାର କଲେ । ଏହି ସମୟକୁ ଚତୁର୍ଦ୍ଦଶ ବର୍ଷ ଅତୀତ ହୋଇଥିବାରୁ, ଲକ୍ଷ୍ମଣ, ସୀତା, ସୁଗ୍ରୀବ, ବିଭୀଷଣ, ହନୁମାନ ପ୍ରଭୃତିଙ୍କୁ ସଙ୍ଗେ ନେଇ ରାମଚନ୍ଦ୍ର ଅଯୋଧ୍ୟାକୁ ପ୍ରତ୍ୟାଗମନ କଲେ । ରାମଚନ୍ଦ୍ର ସୀତାଙ୍କ ସହ

ଅଯୋଧ୍ୟା ସିଂହାସନରେ ଅଭିଷିକ୍ତ ହୋଇ ପରମସୁଖରେ କେତେକ ବର୍ଷ ପ୍ରଜାପାଳନ କଲେ । ସୀତା ରାବଣ ଗୃହରେ ଥିଲେ ; ରାମଚନ୍ଦ୍ର ପୁଣି ତାଙ୍କୁ ଗ୍ରହଣ କରିଅଛନ୍ତି ବୋଲି ପ୍ରଜାମାନେ ଅସନ୍ତୁଷ୍ଟ ହେବାରୁ ପ୍ରକୃତିପୁଞ୍ଜ ପ୍ରଜାମାନଙ୍କୁ ପ୍ରୀତ କରିବା ଉଦ୍ଦେଶ୍ୟରେ ରାମଚନ୍ଦ୍ର ସୀତାଙ୍କୁ ବନବାସ ପ୍ରଦାନ କଲେ । ଏହି ସମୟରେ ସୀତା ଗର୍ଭବତୀ ହୋଇଥିଲେ ।

ରାମଚନ୍ଦ୍ର ବିନାଦୋଷରେ ସୀତାଙ୍କୁ ବନବାସ ଦେଇଥିଲେହେଁ, ପତିବ୍ରତା ସୀତାଙ୍କର ରାମଚନ୍ଦ୍ରଙ୍କଠାରେ ବିରାଗ ଜାତ ହେବା ଦେଖିନ ଥାଉ, ସେ ସବୁବେଳେ ରାମଚନ୍ଦ୍ରଙ୍କ ମଙ୍ଗଳକାମନା କରି, ବାଲ୍ମୀକି ମୁନିଙ୍କ ଆଶ୍ରମରେ ବାସ କଲେ । କେତେକ ଦିନ ଉତ୍ତାରୁ ସୀତାଙ୍କର କୁଶ ଓ ଲବ ନାମକ ଯମଜ ପୁତ୍ରଦ୍ୱୟ ଜାତ ହେଲେ । ବାଲ୍ମୀକି ରାଜପୁତ୍ରଦ୍ୱୟଙ୍କୁ ଅସ୍ତ୍ର ଏବଂ ଶାସ୍ତ୍ର ବିଦ୍ୟାରେ ପାରଦର୍ଶୀ କରାଇଲେ । ଏହା ଉତ୍ତାରୁ ରାମଚନ୍ଦ୍ର ଅଶ୍ୱମେଧଯଜ୍ଞ କଲେ । ଅଶ୍ୱମେଧର ଅଶ୍ୱ ବାଲ୍ମୀକିଙ୍କ ଆଶ୍ରମକୁ ଆସିବାରୁ, କୁଶ ଏବଂ ଲବ ଅଶ୍ୱକୁ ବନ୍ଧନ କରି, ଶତ୍ରୁଘ୍ନ, ଲକ୍ଷ୍ମଣ, ଭରତ, ଏବଂ ପଶ୍ଚାତ୍ ରାମଚନ୍ଦ୍ରଙ୍କୁ ଯୁଦ୍ଧରେ ପରାଜିତ କଲେ । ରାମଚନ୍ଦ୍ର ଏହା ଉତ୍ତାରୁ କୁଶ ଏବଂ ଲବଙ୍କୁ ସ୍ୱୀୟ ପୁତ୍ର ବୋଲି ଅବଗତ ହୋଇ ଅଯୋଧ୍ୟାକୁ ଘେନି ଗଲେ । ସୀତା ମଧ୍ୟ ଅଯୋଧ୍ୟାକୁ ପ୍ରତ୍ୟାଗମନ କଲେ । ରାମଚନ୍ଦ୍ର ଲଙ୍କାରୁ ଅଯୋଧ୍ୟାକୁ ପ୍ରତ୍ୟାଗମନ କାଳରେ ସୀତା ସର୍ବସମକ୍ଷରେ ଅଗ୍ନିପରୀକ୍ଷା ଦେଇ ସ୍ୱୀୟ ସତୀତ୍ୱର ପରିଚୟ ପ୍ରଦାନ କରିଥିଲେ । ବର୍ତ୍ତମାନ ରାମଚନ୍ଦ୍ର ସୀତାଙ୍କୁ ପୁଣି ପରୀକ୍ଷା ଦେବାକୁ କହିବାରୁ, ସୀତା ଲଜ୍ଜାରେ ପାତାଳ ପ୍ରବେଶ କଲେ । ରାମଚନ୍ଦ୍ର ସୀତାଙ୍କ ଶୋକରେ ଅଧୀର ହୋଇ ଭ୍ରାତୃମାନଙ୍କ ସହ ସରଯୂଜଳରେ ଦେହତ୍ୟାଗ କଲେ ।

ଲୀଳା—ଏହିଠାରେ ରାମାୟଣ କଥା ଶେଷ ହେଲା ?

ଅଈ—ହଁ, ମୁଁ ରାମାୟଣର କଥା ସ୍ଥୂଳରେ କହିଲି । ତୁମ୍ଭେମାନେ ଯେତେବେଳେ ରାମାୟଣ ପୋଥି ପଢ଼ିବ, ସେତେବେଳେ ଅନ୍ତର କେତେ କଥା ଅଛି ଜାଣି ପାରିବ । ଆଜି ଏଣିକି ହେଉ ରାତି ହେଲାଣି ଶୋଇବା ।





ଦ୍ୱିତୀୟ ସନ୍ଧ୍ୟା ।

# ମହାଭାରତ ।

---

ହଶାମଣି—ଅଇ, ଅଜ ମହାଭାରତ କଥା କହିବ ପରା ?

ଲୀଳା—ହେଲେ କଅଣ ହେବ, ମହାଭାରତରେ ସୀତାଙ୍କ ପରି ସ୍ତ୍ରୀର
କଥା ଅଉ ନ ଥିବ ?

ପଦ୍ମା—ଆଗେ ତ ଶୁଣି, ଏତେ ବଗ୍ର କାହିଁକି ପଡ଼ିଅଛମ ?

ଅଈ—ହଉ, ଏବେ ଚୁପ ହୋଇ ଶୁଣ ।

ହଶା—ଅଚ୍ଛା, କହ ।

ଅଈ—"କୁରୁବଂଶରେ ଧୃତରାଷ୍ଟ୍ର ଓ ପାଣ୍ଡୁ ନାମରେ ଦୁଇଭାଇ ଥିଲେ । ଜ୍ୟେଷ୍ଠ ଧୃତରାଷ୍ଟ୍ର ଜନ୍ମାନ୍ଧ ହେବାରୁ, କନିଷ୍ଠ ପାଣ୍ଡୁ ରାଜ୍ୟଭାର ପ୍ରାପ୍ତ ହେଲେ । ପାଣ୍ଡୁ ବହୁ ଜନପଦ ଜୟ କରି ସ୍ୱୀୟ ସାମ୍ରାଜ୍ୟଭୁକ୍ତ କଲେ । ପରବର୍ତ୍ତୀ କାଳରେ ପାଣ୍ଡୁ, କୁନ୍ତୀ ଓ ମାଦ୍ରୀ ଉଭୟ ମହିଷୀ-ସହ ଅରଣ୍ୟବାସୀ ହେବାରୁ, ତାହାଙ୍କର ଜ୍ୟେଷ୍ଠଭାତ ଭୀଷ୍ମଦେବ ଧୃତରାଷ୍ଟ୍ରଙ୍କୁ ଉପଲକ୍ଷ କରି ରାଜ୍ୟଶାସନ କଲେ । ଏହି ସମୟରେ ହସ୍ତିନାପୁର କୁରୁବଂଶର ରାଜଧାନୀ ଥିଲା ।

ଅରଣ୍ୟବାସ କାଳରେ ପାଣ୍ଡୁଙ୍କର, କୁନ୍ତୀ ଗର୍ଭରୁ ଯୁଧିଷ୍ଠିର, ଭୀମ, ଓ ଅର୍ଜୁନ ଏବଂ ମାଦ୍ରୀଗର୍ଭରୁ ନକୁଳ ଓ ସହଦେବ, ଏହି ପଞ୍ଚପୁତ୍ର ଜନ୍ମଗ୍ରହଣ କରିଥିଲେ । ପାଣ୍ଡୁଙ୍କ ପୁତ୍ର ବୋଲି ଏହି ପଞ୍ଚପୁତ୍ରଙ୍କ ଅପର ନାମ ପାଣ୍ଡବ ଅଟେ । ଧୃତରାଷ୍ଟ୍ରଙ୍କ ମହିଷୀ ଗାନ୍ଧାରୀ ଗର୍ଭରେ ଦୁର୍ଯ୍ୟୋଧନ, ଦୁଃଶାସନାଦି ଏକଶତ ପୁତ୍ର ଜାତ ହୋଇଥିଲେ । ସାଧାରଣରେ ଏମାନଙ୍କୁ କୁରୁବଂଶୀୟ ବା କୌରବ ବୋଲି କହୁଥିଲେ । ପାଣ୍ଡବ-

ମାନଙ୍କ ଜନ୍ମର ଅଳ୍ପଦିନ ଉତ୍ତାରୁ ପାଣ୍ଡୁଙ୍କର ମୃତ୍ୟୁ ହେବାରୁ, ନକୁଳ ଓ ସହଦେବଙ୍କୁ କୁନ୍ତୀ ହସ୍ତରେ ସମର୍ପଣ କରି ମାଦ୍ରୀ ପତିଙ୍କ ଅନୁମୃତା ହେଲେ । କୁନ୍ତୀ ପାଣ୍ଡବମାନଙ୍କୁ ଘେନି ହସ୍ତିନାପୁରକୁ ପ୍ରତ୍ୟାଗମନ କଲେ ।

"ଧୃତରାଷ୍ଟ୍ର କୌରବ ଶତଭ୍ରାତଙ୍କୁ ପଞ୍ଚପାଣ୍ଡବସହ ପ୍ରଥମ କୃପାଚାର୍ଯ୍ୟଙ୍କ ନିକଟରେ ଅସ୍ତ୍ରଶିକ୍ଷାରେ ନିଯୁକ୍ତ କଲେ । ପଶ୍ଚାତ୍ ଅସ୍ତ୍ରବିଦ୍ୟାବିଶାରଦ ଦ୍ରୋଣାଚାର୍ଯ୍ୟ କୁରୁପାଣ୍ଡବମାନଙ୍କ ଶିକ୍ଷାଗୁରୁ ହେଲେ । ରାଜକୁମାରମାନଙ୍କ ମଧ୍ୟରେ ଯୁଧିଷ୍ଠିର ରଥ ଚାଳନାରେ ଅଦ୍ୱିତୀୟ ପାରଦର୍ଶିତା ଲାଭ କରିଥିଲେ । ସମବୟସ୍କ ଭୀମ ଓ ଦୁର୍ଯ୍ୟୋଧନ ଗଦାଯୁଦ୍ଧରେ ନିପୁଣତା ଲାଭ କରିଥିଲେ । ଅକ୍ଳାନ୍ତବର୍ତ୍ତିତା ଏକାଗ୍ରତା ପ୍ରଭୃତି ଗୁଣ ହେତୁ ଅର୍ଜ୍ଜୁନ ସର୍ବାପେକ୍ଷା ଗୁରୁଙ୍କର ପ୍ରିୟତମ ହୋଇଥିଲେ । ଦ୍ରୋଣ ସ୍ୱୀୟପୁତ୍ର ଅଶ୍ୱତ୍ଥାମାଠାରୁ ସୁଦ୍ଧା ଅର୍ଜ୍ଜୁନଙ୍କୁ ଅଧିକ ଶିକ୍ଷାଦାନ କରିଥିଲେ ।

"କୌରବମାନେ ସବୁବେଳେ ପାଣ୍ଡବମାନଙ୍କ ହିଂସା କରୁଥିଲେ । ଦୁର୍ଯ୍ୟୋଧନ କେତେବେଳେ ବିଷ ଖୁଆଇ, କେତେବେଳେ ଗୃହଦାହ କରି ପାଣ୍ଡବମାନଙ୍କୁ ବିନାଶ କରିବାର ଚେଷ୍ଟା କଲେ । ମାତ୍ର ପାଣ୍ଡବମାନେ ଧୃତରାଷ୍ଟ୍ରଙ୍କ ମନ୍ତ୍ରୀ ଧାର୍ମ୍ମିକ ବିଦୁରଙ୍କ ପରାମର୍ଶରେ ସମସ୍ତ ବିପଦରୁ ପରିତ୍ରାଣ ଲାଭ କଲେ । ତଦନନ୍ତର ପାଣ୍ଡବମାନେ କୁନ୍ତୀସହ ଛଦ୍ମବେଶରେ ନାନା ଅରଣ୍ୟ ଓ ଜନପଦରେ ଭ୍ରମଣ କଲେ । ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କର କୌଣସି ସଂବାଦ ନ ପାଇ ସେମାନେ ନିହତ ହୋଇଅଛନ୍ତି ମନେ କରି ଅତ୍ୟନ୍ତ ଆନନ୍ଦିତ ହେଲେ । କୁନ୍ତୀଙ୍କର କନ୍ୟାକାଳରେ ଏକପୁତ୍ର ଜନ୍ମ ହୋଇଥିଲେ, ତାହାଙ୍କର ନାମ କର୍ଣ୍ଣ । କୁନ୍ତୀ କର୍ଣ୍ଣଙ୍କୁ ତ୍ୟାଗ କରିବାରୁ ରାଧା ନାମକ ଏକ ସାରଥି ତାହାଙ୍କୁ ପାଳନ କରିଥିଲେ । କର୍ଣ୍ଣ ଅସ୍ତ୍ରବିଶାରଦ ହୋଇ ମହାବୀର ହେଲେ ।

ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ ସଖା କରି ତାହାଙ୍କ ଅଙ୍ଗରାଜ୍ୟରେ ଅଭିଷିକ୍ତ କଲେ ।

"ପାଣ୍ଡବମାନେ ଛଦ୍ମବେଶରେ ଭ୍ରମଣ କରୁ୨ ଏକ ଅରଣ୍ୟରେ ପ୍ରବିଷ୍ଟ ହେଲେ । ହିଡ଼ିମ୍ବ ନାମକ ଏକ ପରାକ୍ରାନ୍ତ ରାକ୍ଷସ ସେହି ଅରଣ୍ୟର ଅଧପତି ଥିଲା । ହିଡ଼ିମ୍ବ ପାଣ୍ଡବମାନଙ୍କୁ ବିନାଶ କରିବାକୁ ଉଦ୍ୟତ ହେବାରୁ, ଭୀମ ତାହାକୁ ନିହତ କଲେ । କୁନ୍ତୀ ଏବଂ ଯୁଧିଷ୍ଠିରଙ୍କ ଅନୁମତି ପ୍ରାପ୍ତ ହୋଇ ଭୀମ ହିଡ଼ିମ୍ବସହୋଦରା ହିଡ଼ିମ୍ବାର ପାଣିଗ୍ରହଣ କଲେ । ହିଡ଼ିମ୍ବା ଗର୍ଭରୁ ଭୀମଙ୍କର ମହାବଳ ପରାକ୍ରାନ୍ତ ଘଟୋତ୍କଚ ନାମକ ପୁତ୍ର ଜନ୍ମଗ୍ରହଣ କଲେ । ଏହା ଉତ୍ତାରୁ କୁନ୍ତୀ ଓ ପାଣ୍ଡବମାନେ ଏକଚକ୍ରାନଗରକୁ ଯାଇ ଏକ ବ୍ରାହ୍ମଣଗୃହରେ ଯାଇ ରହିଲେ । ଏହିଠାରେ ଭୀମ ମାତାଙ୍କ ଆଦେଶରେ ବକ ରାକ୍ଷସକୁ ନିହତ କରି ଏକଚକ୍ରାନଗରୀକୁ ନିରାପଦ କଲେ ।

"କଛଦିନ ଉତ୍ତାରୁ ପାଣ୍ଡବମାନେ ବ୍ୟାସଙ୍କଠାରୁ ପଞ୍ଚାଳରାଜକନ୍ୟା ଦ୍ରୌପଦୀଙ୍କର ସ୍ୱୟମ୍ବର ସଂବାଦ ପ୍ରାପ୍ତ ହୋଇ ବ୍ରାହ୍ମଣବେଶରେ କୁନ୍ତୀସହ ପଞ୍ଚାଳ ରାଜଧାନୀକୁ ଗମନ କରି ଏକ କୁମ୍ଭକାର ଗୃହରେ ଅବସ୍ଥାନ କଲେ ।

"ଦ୍ରୌପଦୀଙ୍କ ସ୍ୱୟମ୍ବରସଭାକୁ ଭାରତର ସମସ୍ତ ପ୍ରଦେଶରୁ ରାଜାମାନେ ଲକ୍ଷ୍ୟଭେଦ କରି ଦ୍ରୌପଦୀ ଲାଭ କରିବାକୁ ଆଗମନ କରିଥିଲେ । ଦୁର୍ଯ୍ୟୋଧନ, ଦୁଃଶାସନ, ଶକୁନି, ଜୟଦ୍ରଥ, ଶିଶୁପାଳ, ଜରାସନ୍ଧ, ବିରାଟ, କୀଚକ, ଦ୍ରୋଣ, ଭୀଷ୍ମ, ଅଶ୍ୱତ୍ଥାମା, କର୍ଣ୍ଣ ପ୍ରଭୃତି ମହାବୀରମାନଙ୍କ ମଧ୍ୟରୁ କେହି ଲକ୍ଷ୍ୟ ଭେଦ କରିବାକୁ ସକ୍ଷମ ନ ହେବାରୁ, ଦ୍ରୁପଦପୁତ୍ର ଧୃଷ୍ଟଦ୍ୟୁମ୍ନ ସଭାସ୍ଥ ବ୍ୟକ୍ତିମାନଙ୍କ ଉଦ୍ଦେଶରେ କହିଲେ —"ବ୍ରାହ୍ମଣ ହେଉନ୍ତୁ, କ୍ଷତ୍ରିୟ ହେଉନ୍ତୁ, ଅବା ବୈଶ୍ୟ ହେଉନ୍ତୁ,

ଯେ ଲକ୍ଷ୍ୟ ଭେଦ କରିବେ, ଦ୍ରୌପଦୀ ତାହାଙ୍କୁ ପତିରୂପରେ ବରଣ କରିବେ ।” ଏହା ଶ୍ରବଣକରି ଉପବିଷ୍ଟ ବ୍ରାହ୍ମଣମଣ୍ଡଳୀ ମଧ୍ୟରୁ ଅର୍ଜ୍ଜୁନ ନିର୍ଗତ ହୋଇ ଲକ୍ଷ୍ୟଭେଦ ପୂର୍ବକ ଦ୍ରୌପଦୀ ଲାଭ କଲେ । ଏଥିରେ ରାଜାମାନେ କ୍ରୁଦ୍ଧ ହୋଇ ଦ୍ରୁପଦଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ କରି ଭୀମାର୍ଜ୍ଜୁନଙ୍କ ପରାକ୍ରମରେ ପରାଜିତ ହୋଇ ପଳାୟନ କଲେ । ଯୁଦ୍ଧ ଜୟ କରି ପାଣ୍ଡବମାନେ ଦ୍ରୌପଦୀ ସହ କୁମ୍ଭକାରଗୃହକୁ ବାହୁଡ଼ି ଆସିଲେ । ଏହିଠାରେ ପାଣ୍ଡବମାନଙ୍କ ମାତୁଳପୁତ୍ର କୃଷ୍ଣ ଓ ବଳରାମ ପାଣ୍ଡବମାନଙ୍କ ସଙ୍ଗେ ସାକ୍ଷାତ୍ କଲେ ।

“ଦ୍ରୁପଦରାଜ କୁନ୍ତୀ ଏବଂ ପାଣ୍ଡବମାନଙ୍କର ପରିଚୟ ଗ୍ରହଣ କରି, ପଞ୍ଚପାଣ୍ଡବଙ୍କ ସଙ୍ଗେ ଦ୍ରୌପଦୀଙ୍କର ବିବାହ ପ୍ରଦାନ କଲେ । ପାଣ୍ଡବମାନେ ଜୀବିତ ଅଛନ୍ତି ଏବଂ ଦ୍ରୌପଦୀଙ୍କର ପାଣିଗ୍ରହଣ କରିଅଛନ୍ତି ଅବଗତ ହୋଇ ରାଜା ଧୃତରାଷ୍ଟ୍ର ପଞ୍ଚାଳରାଜ୍ୟକୁ ବିଦୁରଙ୍କୁ ପ୍ରେରଣ କରି ସେମାନଙ୍କୁ ହସ୍ତିନାକୁ ଘେନି ଆସିଲେ । ପ୍ରଜାବର୍ଗ କୁନ୍ତୀ ଓ ଦ୍ରୌପଦୀ ସହ ପାଣ୍ଡବମାନଙ୍କୁ ଦର୍ଶନ କରି ଅତ୍ୟନ୍ତ ଆନନ୍ଦ ପ୍ରକାଶ କଲେ; ଏବଂ ଧୃତରାଷ୍ଟ୍ର ସେମାନଙ୍କୁ ଅର୍ଦ୍ଧ ରାଜ୍ୟ ପ୍ରଦାନ କରି ଖାଣ୍ଡବପ୍ରସ୍ଥରେ ବାସ କରିବାର ଅନୁମତି ଦେଲେ ।

“ପାଣ୍ଡବମାନେ ଖାଣ୍ଡବପ୍ରସ୍ଥରେ ରାଜଧାନୀ ସ୍ଥାପନ କରି ତାହାର ନାମ ଇନ୍ଦ୍ରପ୍ରସ୍ଥ ରଖିଲେ । ଏହା ଉତ୍ତାରୁ ଅର୍ଜ୍ଜୁନ ନିୟମଭଙ୍ଗ ହେତୁ ଦ୍ୱାଦଶ ବର୍ଷ ବନବାସୀ ହେଲେ । ବନବାସକାଳରେ ଅର୍ଜ୍ଜୁନ ନାଗକନ୍ୟା ଉଲୂପୀ, ମଣିପୁର ରାଜକନ୍ୟା ଚିତ୍ରାଙ୍ଗଦା ଏବଂ କୃଷ୍ଣଭଗିନୀ ସୁଭଦ୍ରାଙ୍କ ପାଣିଗ୍ରହଣ କରିଥିଲେ । ଅର୍ଜ୍ଜୁନଙ୍କର ଉଲୂପୀ ଗର୍ଭରୁ ଇରାବନ୍ତ, ଚିତ୍ରାଙ୍ଗଦା ଗର୍ଭରୁ ବଭ୍ରୁବାହନ, ଏବଂ ସୁଭଦ୍ରା ଗର୍ଭରୁ ଅଭିମନ୍ୟୁ ନାମକ ପ୍ରବଳ ପରାକ୍ରମୀ ତିନିପୁତ୍ର ଜନ୍ମଗ୍ରହଣ କରିଥିଲେ । ଦ୍ୱାଦଶ

ବର୍ଷ ଅଖିତ ହେବାରୁ ଅର୍ଜ୍ଜୁନ ସୁଭଦ୍ରା ସହ ଇନ୍ଦ୍ରପ୍ରସ୍ଥକୁ ପ୍ରତ୍ୟାଗମନ କଲେ । ଏହା ପୂର୍ବେ ପଞ୍ଚପାଣ୍ଡବଙ୍କର ଦ୍ରୌପଦୀଙ୍କ ଗର୍ଭରୁ ମହାବଳଶାଳୀ ପଞ୍ଚପୁତ୍ର ଜାତ ହୋଇଥିଲେ । କୃଷ୍ଣ ଏବଂ ଅର୍ଜ୍ଜୁନ ଖାଣ୍ଡବବନ ଦାହନ କରି ଅଗ୍ନିଦେବତାଙ୍କୁ ପରିତୃଷ୍ଟ କଲେ । ଅଗ୍ନିଦେବତା ଅର୍ଜ୍ଜୁନଙ୍କୁ ଅକ୍ଷୟ ତୂଣୀର, ଗାଣ୍ଡୀବ ଧନୁ ଓ କପିଧ୍ୱଜ ରଥ, ଏବଂ କୃଷ୍ଣଙ୍କୁ ସୁଦର୍ଶନ ଚକ୍ର ପ୍ରଦାନ କଲେ ।

"ମଗଧର ପ୍ରବଳ ପରାକ୍ରାନ୍ତ ନୃପତି ଜରାସନ୍ଧ ବହୁସଂଖ୍ୟକ ନୃପତିଙ୍କୁ ପରାଜିତ କରି ବନ୍ଦୀ କରି ରଖିଥିଲେ । ବନ୍ଦୀ ନୃପତିମାନଙ୍କୁ ବିମୁକ୍ତ କରିବା ଉଦ୍ଦେଶ୍ୟରେ କୃଷ୍ଣ ଭୀମାର୍ଜ୍ଜୁନ ସହ ଛଦ୍ମବେଶରେ ମଗଧରାଜ୍ୟକୁ ଗମନ କଲେ । ସେଠାରେ ଭୀମ ମହାବଳଶାଳୀ ମହାରାଜ ଜରାସନ୍ଧଙ୍କୁ ବାହୁଯୁଦ୍ଧରେ ନିହତ କରିବାରୁ, କୃଷ୍ଣ ବନ୍ଦୀ-ନରପତିମାନଙ୍କୁ ମୁକ୍ତିଦାନ କରି, ଜରାସନ୍ଧଙ୍କ ପୁତ୍ର ସହଦେବଙ୍କୁ ମଗଧର ସିଂହାସନରେ ଅଭିଷିକ୍ତ କରାଇଲେ । ଏହା ଉତ୍ତାରୁ ଯୁଧିଷ୍ଠିର ରାଜସୂୟ ଯଜ୍ଞର ଅନୁଷ୍ଠାନ କଲେ ।

"ରାଜସୂୟ ଯଜ୍ଞ ସକାଶେ ଧନାଗମ ଏବଂ ଭୂପାଳମାନଙ୍କ ଉପରେ ପ୍ରଭୁତ୍ୱ ସ୍ଥାପନ ଉଦ୍ଦେଶ୍ୟରେ ଅର୍ଜ୍ଜୁନ ଉତ୍ତର ଦିଗ, ଭୀମ ପଶ୍ଚିମଦିଗ, ନକୁଳ ପୂର୍ବଦିଗ, ଏବଂ ସହଦେବ ଦକ୍ଷିଣଦିଗକୁ ଯାତ୍ରା କଲେ । ଏମାନେ ବହୁ ଧନରତ୍ନ ଓ ଭୂପାଳମାନଙ୍କ ପ୍ରଦତ୍ତ କର ସଂଗ୍ରହ କରି ପ୍ରତ୍ୟାବୃତ୍ତ ହେଲେ । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ପୃଥିବୀର ପ୍ରାୟ ସମସ୍ତ ନରପତିମାନେ ନିମନ୍ତ୍ରିତ ହୋଇଥିଲେ । ଯଜ୍ଞସଭାରେ ଶିଶୁପାଳଙ୍କ ସଙ୍ଗେ କୃଷ୍ଣଙ୍କ ଓ ପାଣ୍ଡବମାନଙ୍କ ବିରୋଧ ଉପସ୍ଥିତ କରିବାରୁ, କୃଷ୍ଣ ଶିଶୁପାଳଙ୍କୁ ନିହତ କଲେ । ଯଜ୍ଞ ଶେଷ ହେବାରୁ ନିମନ୍ତ୍ରିତ ନୃପତିବର୍ଗ ଏବଂ ଅନ୍ୟାନ୍ୟ ବ୍ୟକ୍ତିମାନେ ସ୍ୱଦେଶକୁ ପ୍ରତ୍ୟାଗମନ କଲେ ।

"ରାଜସୂୟ ଯଜ୍ଞରେ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କ ଅତୁଳ ବିଭବ ଦର୍ଶନ କରି ଈର୍ଷାନଳରେ ଦଗ୍ଧ ହେଲେ । ସେ ହସ୍ତିନା ପ୍ରତ୍ୟାଗମନ କରି, ସ୍ୱୀୟ ମାତୁଳ ଶକୁନିଙ୍କ ପରାମର୍ଶରେ, ଯୁଧିଷ୍ଠିରଙ୍କୁ ଦ୍ୟୂତକ୍ରୀଡ଼ା କରିବାକୁ ଆହ୍ୱାନ କଲେ । ଯୁଧିଷ୍ଠିର ଭ୍ରାତାମାନଙ୍କ ସହ କୁରୁସଭାରେ ଉପସ୍ଥିତ ହୋଇ ଦୁର୍ଯ୍ୟୋଧନଙ୍କ ପ୍ରତିଭୂ ଶକୁନି ସହ ଦ୍ୟୂତକ୍ରୀଡ଼ାରେ ପ୍ରବୃତ୍ତ ହେଲେ । ଶକୁନି କପଟ ଦ୍ୟୂତରେ ଅତ୍ୟନ୍ତ ପାରଦର୍ଶୀ ଥିଲେ । ଯୁଧିଷ୍ଠିର କପଟଦ୍ୟୂତରେ ପରାଜିତ ହୋଇ କ୍ରମରେ ଧନ, ରତ୍ନ, ରାଜ୍ୟ, ଦାସ, ଦାସୀ, ଭ୍ରାତାମାନଙ୍କୁ, ପଛକୁ ଆପଣାକୁ ମଧ୍ୟ ହାରିଲେ । ଯୁଧିଷ୍ଠିର ସେତେବେଳେ ସୁଦ୍ଧା କ୍ଷାନ୍ତ ନ ହୋଇ ସର୍ବଶେଷରେ ଦ୍ରୌପଦୀଙ୍କୁ ପଣ ରଖିଲେ । ଶକୁନି ଜୟଲାଭ କରିବାରୁ, ଦୁର୍ଯ୍ୟୋଧନ ଦ୍ରୌପଦୀଙ୍କୁ ସଭା ମଧ୍ୟକୁ ଆଣିବା ସକାଶେ ଦୁଃଶାସନଙ୍କୁ ପ୍ରେରଣ କଲେ । ଦୁଃଶାସନ କେଶାକର୍ଷଣ କରି ଦ୍ରୌପଦୀଙ୍କୁ ସଭାମଧ୍ୟକୁ ଘେନି ଆସିଲେ । ସଭା ମଧ୍ୟରେ ଦୁଃଶାସନ ଦୁର୍ଯ୍ୟୋଧନଙ୍କ ଆଜ୍ଞାରେ ଦ୍ରୌପଦୀଙ୍କୁ ଅକଥ୍ୟ ଭାବରେ ଅପମାନିତ ଓ ଲାଞ୍ଛିତ କଲେ । ଏହା ଉତ୍ତାରୁ ଧୃତରାଷ୍ଟ୍ର ଦ୍ରୌପଦୀଙ୍କୁ ଏବଂ ପାଣ୍ଡବମାନଙ୍କୁ ଦାସତ୍ୱରୁ ମୁକ୍ତିଦାନ କଲେ । ମାତ୍ର ଦୁର୍ଯ୍ୟୋଧନ ପୁଣି ଯୁଧିଷ୍ଠିରଙ୍କୁ ଦ୍ୟୂତକ୍ରୀଡ଼ାରେ ଆହ୍ୱାନ କରିବାରୁ ପାଣ୍ଡବମାନେ ପରାଜିତ ହୋଇ ଦ୍ୱାଦଶବର୍ଷ ବନବାସ ଏବଂ ଏକବର୍ଷ ଅଜ୍ଞାତ ବାସ କରିବାକୁ ପ୍ରସ୍ଥାନ କଲେ । ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କ ସଙ୍ଗେ ଏହି ପଣ କରିଥିଲେ ଯେ ପାଣ୍ଡବମାନେ ଅଜ୍ଞାତବାସ କରି ପ୍ରତ୍ୟାଗମନ କଲେ ସେମାନଙ୍କ ରାଜ୍ୟ ଧନାଦି ପ୍ରତ୍ୟର୍ପଣ କରିବେ । ବନବାସ ଗମନ କାଳରେ ଭୀମ ପ୍ରତିଜ୍ଞା କଲେ ଯେ, ଅଜ୍ଞାତବାସ ଉତ୍ତାରୁ ଦୁର୍ଯ୍ୟୋଧନ ରାଜ୍ୟ ପ୍ରଦାନ ନ କଲେ, ଯୁଦ୍ଧକ୍ଷେତ୍ରରେ ଦୁଃଶାସନର ବକ୍ଷ ବିଦୀର୍ଣ୍ଣ କରି ରକ୍ତପାନ ଓ ରକ୍ତାକ୍ତ ହସ୍ତରେ ଦ୍ରୌପଦୀଙ୍କ ବେଣୀ

ବନ୍ଦନ କରିବେ, ଏବଂ ଦୁର୍ଯ୍ୟୋଧନଙ୍କ ଊରୁଭଙ୍ଗ କରି ତାଙ୍କ ମସ୍ତକରେ ପଦାଘାତ କରିବେ । ପାଣ୍ଡବମାନେ ବିଦୁରଙ୍କ ଗୃହରେ ବୃଦ୍ଧା କୁନ୍ତୀଙ୍କୁ ରଖି ଦ୍ରୌପଦୀ ସହ ଅରଣ୍ୟକୁ ପ୍ରସ୍ଥାନ କଲେ । ସେହି ଦିନରୁ ଅପମାନର ପ୍ରତିଶୋଧ ନ ହେବା ପର୍ଯ୍ୟନ୍ତ ଦ୍ରୌପଦୀ ସ୍ୱୀୟ ବେଣୀକୁ ମୁକୁଳା ରଖିଥିଲେ ।"

ଲୀଳାବତୀ—ଅଚ୍ଛା ଅଈ, ଯୁଧିଷ୍ଠିର ପଶା ନ ଖେଳିଥିଲେଁ ଏତେ ସରିକି ହୋଇ ନ ଥାନ୍ତା?

ଅଈ—କ୍ଷତ୍ରିୟମାନଙ୍କ ଧର୍ମ ଏହି ଯେ କେହି ପାଶା ଖେଳିବାକୁ ଡାକିଲେ ବା ଯୁଦ୍ଧ କରିବାକୁ ଡାକିଲେ, ପ୍ରାଣ ଥିବାଯାଏ କ୍ଷତ୍ରିୟମାନେ ନିଷେଧ କରିବେ ନାହିଁ । ଯୁଧିଷ୍ଠିର କ୍ଷତ୍ରିୟଧର୍ମ ରକ୍ଷା ସକାଶେ ପାଶା ଖେଳିଥିଲେ ।

କଣାମଣି—ଏଥିପାଇଁ ଲୋକେ କହନ୍ତି, ପାଶା ଖେଳିଲେ ମଙ୍ଗଳ ହୁଏ ନାହିଁ । ଅଚ୍ଛା ଅଈ, ପାଣ୍ଡବମାନେ ପୁଣି ରାଜ୍ୟ ପାଇଲେ ?

ଅଈ—ଆଜି ରାତି ହେଲାଣି, ଏତିକି ହେଉ, କାଲି ପୁଣି କହିବି ।



ତୃତୀୟ ସନ୍ଧ୍ୟା ।

# ମହାଭାରତ ।

---

ସତ୍ୟବତୀ—ଅକ୍ତ, ରାମାୟଣରେ ସୀତା ରାଜକନ୍ୟା ହୋଇ ବନ-ବାସ କରିଥିଲେ, ମହାଭାରତରେ ମଧ୍ୟ ଦ୍ରୌପଦୀ ରାଜକନ୍ୟା ହୋଇ ବନବାସ କରିଥିଲେ । ଏମାନଙ୍କ ମଧ୍ୟରୁ କିଏ ଅଧିକ ଦୁଃଖ ପାଇ-ଥିଲେ ?

ଅକ୍ତ—ତୁମ୍ଭେମାନେ ମହାଭାରତ କଥା ସବୁ ଆଗେ ଶୁଣ ପଛେ ତାହାର ବିଚାର କରିବ ।

ଲୀଳାବତୀ—ହଉ ଅଈ, ପାଣ୍ଡବମାନେ ବନକୁ ଯାଇ କି କଲେ କହ ।

ଅକ୍ତ—"ପାଣ୍ଡବମାନେ ଦ୍ରୌପଦୀସହ ପ୍ରଥମ କାମ୍ୟକବନରେ ଯାଇ ବାସ କଲେ । ପାଣ୍ଡବମାନଙ୍କ ବନବାସ ବୃତ୍ତାନ୍ତ ଅବଗତ ହୋଇ ଦ୍ରୁପଦ, କୃଷ୍ଣ ପ୍ରଭୃତି ପାଣ୍ଡବବନ୍ଧୁମାନେ ଅତି ଦୁଃଖ ପ୍ରକାଶ କଲେ, ଏବଂ ତ୍ରୟୋଦଶବର୍ଷ ପରେ ଯୁଦ୍ଧ ଉପସ୍ଥିତ ହେଲେ ପାଣ୍ଡବମାନଙ୍କୁ ସାହାଯ୍ୟ କରିବାକୁ ପ୍ରତିଶ୍ରୁତ ହୋଇ ସ୍ୱ ସ୍ୱ ରାଜ୍ୟକୁ ପ୍ରତ୍ୟାଗମନ କଲେ । ଏହା ଉତ୍ତାରୁ ପାଣ୍ଡବମାନେ ଦ୍ୱୈତବନରେ ଯାଇ ବାସ କଲେ । ବ୍ୟାସଦେବଙ୍କ ପରାମର୍ଶରେ ଅର୍ଜୁନ ଦେବାସ୍ତ୍ରଲାଭ କରିବା ସକାଶେ ଦେବଲୋକକୁ ଗମନ କଲେ । ଯୁଧିଷ୍ଠିର ପୁଣି କାମ୍ୟକବନକୁ ପ୍ରତ୍ୟା-ଗମନ କରି ତୀର୍ଥପର୍ଯ୍ୟଟନରେ ନିର୍ଗତ ହେଲେ । ପାଞ୍ଚବର୍ଷ ତୀର୍ଥପର୍ଯ୍ୟଟନ କରି ଯୁଧିଷ୍ଠିର ଦ୍ରୌପଦୀ ଓ ଭ୍ରାତାମାନଙ୍କୁ ଘେନି ଗନ୍ଧମାଦନ ପର୍ବତରେ ଉପସ୍ଥିତ ହେଲେ । ଏହିଠାରେ ଅର୍ଜୁନ ଦେବଲୋକରୁ ବିବିଧ ଅସ୍ତ୍ର-

ନ୍ତର କରି ଯୁଧିଷ୍ଠିରଙ୍କ ସହ ମିଳିତ ହେଲେ । ପାଣ୍ଡବମାନେ ନାନାତୀର୍ଥ ଭ୍ରମଣ କରି ତଦନନ୍ତର ପ୍ରଭାସ ତୀର୍ଥକୁ ଯାତ୍ରା କଲେ ।

"ଏହିସମୟରେ ରାଜା ଦୁର୍ଯ୍ୟୋଧନ କର୍ଣ୍ଣ ଓ ଶକୁନିଙ୍କ ପରାମର୍ଶରେ ପାଣ୍ଡବମାନଙ୍କୁ ସ୍ୱୀୟ ଅତୁଳବିଭବ ପ୍ରଦର୍ଶନ କରାଇବା ମାନସରେ ପ୍ରଭାସତୀର୍ଥରେ ସ୍ନାନ କରିବାକୁ ଯାତ୍ରା କଲେ । ଦୁର୍ଯ୍ୟୋଧନଙ୍କ ଅସଂଖ୍ୟ ହସ୍ତ୍ୟଶ୍ୱପଦାତିସହ କର୍ଣ୍ଣ, ଶକୁନି ଓ ପୁରସ୍ତ୍ରୀମାନେ ଗମନ କରିଥିଲେ । କୌରବରମଣୀମାନେ ରଥାରୋହଣରେ ପାଣ୍ଡବମାନଙ୍କ ଆଶ୍ରମ ସନ୍ନି-କଟ ଦେଇ ଗମନ କାଳରେ, ଜଣେ ଅନ୍ୟ ଜଣକୁ ଅଙ୍ଗୁଳି ନିର୍ଦ୍ଦେଶ କରି ବଲ୍କଳପରିହିତା ପର୍ଣ୍ଣକୁଟୀରରେ ଉପବିଷ୍ଟା ଦ୍ରୌପଦୀଙ୍କୁ ଦେଖାଇ ଦେଲେ । ଐଶ୍ୱର୍ଯ୍ୟମଦରେ ମତ୍ତ କୌରବମାନେ ପ୍ରଭାସ ସନ୍ନିକଟସ୍ଥ ଗନ୍ଧର୍ବୋଦ୍ୟାନ ନଷ୍ଟ କରିବାରୁ ଗନ୍ଧର୍ବପତି ଚିତ୍ରସେନ କର୍ଣ୍ଣସହ କୌରବସୈନ୍ୟଙ୍କୁ ପରାଜିତ କରି, ଦୁର୍ଯ୍ୟୋଧନ ଏବଂ ପୁରସ୍ତ୍ରୀମାନଙ୍କୁ ବନ୍ଦୀ କଲେ । ଯୁଧିଷ୍ଠିର ଏହି ସଂବାଦ ପ୍ରାପ୍ତ ହୋଇ ଅର୍ଜ୍ଜୁନଙ୍କୁ ପ୍ରେରଣ କଲେ । ଅର୍ଜ୍ଜୁନ ଗନ୍ଧର୍ବପତିଙ୍କୁ ଯୁଦ୍ଧରେ ପରାଜିତ ଓ ଦୁର୍ଯ୍ୟୋଧନସହ ପୁରନାରୀମାନଙ୍କୁ ମୁକ୍ତ କରି ଯୁଧିଷ୍ଠିରଙ୍କ ନିକଟକୁ ଘେନି ଆସିଲେ । ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କୁ ଏବଂ ଦ୍ରୌପଦୀ କୁରୁନାରୀମାନଙ୍କୁ ସାନ୍ତ୍ୱନା ପ୍ରଦାନ କରି ଯଥାବିହିତ ସତ୍କାର କଲେ । ଦୁର୍ଯ୍ୟୋଧନ ଅପମାନିତ ଓ ଲଜ୍ଜିତ ହୋଇ ସ୍ୱରାଜ୍ୟକୁ ପ୍ରତ୍ୟାଗମନ କଲେ ।

ନଶାମଣି—ଅଇ କାହାରି ଗର୍ବ ରହେ ନାହିଁ, ଦୁର୍ଯ୍ୟୋଧନଙ୍କ ଯେମନ୍ତ କର୍ମ ସେହିପରି ଫଳ ମିଳିଲା ।

ପଦ୍ମାବତୀ—ପରମଶତ୍ରୁ ହୋଇ ପାଣ୍ଡବମାନେ ଦୁର୍ଯ୍ୟୋଧନଙ୍କୁ ଯାହା ଏପରି ବିପଦରେ ଉଦ୍ଧାରି କଲେ ଏହା ଦୁର୍ଯ୍ୟୋଧନଙ୍କୁ ବଡ଼ି ବାଧୁଥିବ । କୁରୁସ୍ତ୍ରୀମାନେ ପରା ଲଜ୍ଜାରେ ମରି ଯାଇଥିବେ ।

ଲୀଳାବତୀ—ଯୁଧିଷ୍ଠିରଙ୍କ ଦୟାକୁ ଦେଖ । ଦୁର୍ଯ୍ୟୋଧନ ପର ଶତ୍ରୁକୁ ଯାହାଙ୍କ ଉଦ୍ଧାର କଲେ । ଅଚ୍ଛା ଅଛ, ସେହିଠୁ କଅଣ ହେଲା ?

ଅଛ—"ଦୁର୍ଯ୍ୟୋଧନ ହସ୍ତିନାକୁ ଆସି ପାଣ୍ଡବମାନଙ୍କ ଅନଷ୍ଟ କରିବା ମାନସରେ ଦୁର୍ବାସାମୁନିଙ୍କୁ ପ୍ରେରଣ କଲେ । ମାତ୍ର ଦୁର୍ବାସା ଶିଷ୍ୟମାନଙ୍କ ସହ ପାଣ୍ଡବମାନଙ୍କ ଅତିଥ୍ୟରେ ପରମତୁଷ୍ଟ ହୋଇ ସେମାନଙ୍କୁ ବର ଦାନ କରି ଚାଲି ଗଲେ । ଏହା ଉତ୍ତାରୁ ଦୁର୍ଯ୍ୟୋଧନ ଦ୍ରୌପଦୀଙ୍କୁ ହରଣ କରି ଆଣିବା ନିକାଶେ ଅପଣାର ଭଗିନୀପତି ଜୟଦ୍ରଥଙ୍କୁ ପ୍ରେରଣ କଲେ । ଯେଉଁ ସମୟରେ ଭୀମାର୍ଜ୍ଜୁନ ମୃଗୟା ଏବଂ ଯୁଧିଷ୍ଠିର ପ୍ରଭୃତି ସ୍ନାନ କରିବାକୁ ଯାଇଥିବାରୁ ଆଶ୍ରମରେ ଅନ୍ୟ କେହି ଉପସ୍ଥିତ ନ ଥିଲେ, ସେହି ସମୟରେ ଜୟଦ୍ରଥ ଦ୍ରୌପଦୀଙ୍କୁ ବଳପୂର୍ବକ ରଥରେ ବସାଇ ପ୍ରସ୍ଥାନ କଲେ । ମାତ୍ର ବାଟରେ ଭୀମାର୍ଜ୍ଜୁନ ସହ ଭେଟ ହେବାରୁ ଜୟଦ୍ରଥ ଭୀମଠାରୁ ବହୁ ଅପମାନ ପ୍ରାପ୍ତ ହେଲେ । ଏହି ସମୟରେ ଯୁଧିଷ୍ଠିର ସେହିଠାରେ ଉପସ୍ଥିତ ହୋଇ ଭୀମହସ୍ତରୁ ଜୟଦ୍ରଥଙ୍କୁ ରକ୍ଷା କରି ତାହାଙ୍କୁ ବିଦାୟ ଦେଲେ ।

"ବନବାସର ଦ୍ୱାଦଶବର୍ଷ ପୂର୍ଣ୍ଣ ହେବାରୁ ପାଣ୍ଡବମାନେ ବିରାଟ-ନଗର ସନ୍ନିକଟସ୍ଥ ଏକ ଶମୀବୃକ୍ଷରେ ସ୍ୱ ସ୍ୱ ଅସ୍ତ୍ରମାନ ଗୋପନ କରି ରଖି, ଛଦ୍ମବେଶ ଧାରଣ ପୂର୍ବକ ବିରାଟ ରାଜସଭାକୁ ଗମନ କଲେ । ଯୁଧିଷ୍ଠିର ବ୍ରାହ୍ମଣବେଶରେ କଙ୍କ ନାମ ଧାରଣ କରି ବିରାଟରାଜାଙ୍କ ସଭାସଦ; ଭୀମ ବଲ୍ଲଭ ନାମ ଧାରଣ କରି ସୂପକାର; ଅର୍ଜ୍ଜୁନ ନାରୀ-ବେଶ ଧରି ଅପଣାକୁ ବୃହନ୍ନଳା ନାମରେ ପରିଚିତ କରାଇ ରାଜ-କନ୍ୟା ଉତ୍ତରାଙ୍କ ସଙ୍ଗୀତ ଶିକ୍ଷୟିତ୍ରୀ; ନକୁଳ ଗ୍ରନ୍ଥିକ ନାମରେ ଅଶ୍ୱ-ରକ୍ଷକ; ଏବଂ ସହଦେବ ତନ୍ତିପାଳ ନାମରେ ବିରାଟରାଜାଙ୍କର ଗୋରକ୍ଷକ ହୋଇ ଅବସ୍ଥାନ କଲେ । ଦ୍ରୌପଦୀ ଅପଣାକୁ ସୈରନ୍ଧ୍ରୀ

ବୋଲି ପରିଚୟ ଦେଇ ବିରାଟରାଣୀଙ୍କ ଅନ୍ତଃପୁରେ ଯାଇ ବାସ କଲେ ।

"ବିରାଟଭବନରେ ପାଣ୍ଡବମାନଙ୍କର ନିର୍ବିଘ୍ନରେ ଦଶମାସ ଅତୀତ ହେଲା । ଅଲୌକିକସାମାନ୍ୟା ରୂପବତୀ ସୈରନ୍ଧ୍ରୀ ଦିନେ ବିରାଟରାଜଶ୍ୟାଳକ କୀଚକର ଦୃଷ୍ଟିପଥରେ ପତିତା ହେବାରୁ, କୀଚକ ତାହାଙ୍କୁ ସ୍ତ୍ରୀସ୍ୱ ପତ୍ନୀ କରିବାର ଅଭିପ୍ରାୟ ବ୍ୟକ୍ତ କଲା । ମାତ୍ର ଦ୍ରୌପଦୀ କୀଚକଙ୍କ ବାକ୍ୟ ଗ୍ରାହ୍ୟ ନ କରିବାରୁ କୀଚକ ସ୍ୱୀୟ ଅବାସରେ ଦ୍ରୌପଦୀଙ୍କୁ ଅବରୁଦ୍ଧ କରି ରଖିବାକୁ ଉଦ୍ୟତ ହେଲା । ଦ୍ରୌପଦୀ ଦ୍ରୁତବେଗରେ ପଳାୟନ କରି ରାଜସଭାତଳରେ ଆସି ଉପନୀତା ହେଲେ । କୀଚକ ଦ୍ରୌପଦୀଙ୍କ ପଶ୍ଚାତ୍ ଅନୁସରଣ କରି ରାଜସଭାରେ ଉପସ୍ଥିତ ହୋଇ, ଦ୍ରୌପଦୀଙ୍କ କେଶାକର୍ଷଣ ପୂର୍ବକ ପଦାଘାତ କଲା । ବିରାଟରାଜ ସ୍ୱଚକ୍ଷୁରେ ଏହା ଦର୍ଶନ କରି କୌଣସି ପ୍ରତିବିଧାନ ନ କରିବାରୁ ଦ୍ରୌପଦୀ କ୍ରନ୍ଦନ କରି୨ ଅନ୍ତଃପୁରକୁ ଗମନ କଲେ । ନିଶାଗମରେ ଦ୍ରୌପଦୀ ଭୀମଙ୍କ ନିକଟରେ ଉପସ୍ଥିତ ହୋଇ କୀଚକବଧର ମନ୍ତ୍ରଣା କଲେ । ପର ଦିବସ ନିଶାକାଳରେ ଭୀମ କୀଚକକୁ ନିହତ କଲେ ।

ପରଦିବସ ପ୍ରାତଃକାଳରେ କୀଚକର ଏକୋନଶତ ଭ୍ରାତା କୀଚକକୁ ନିହତ ଦେଖି ଦ୍ରୌପଦୀଙ୍କୁ ସେହି ନିଧନର କାରଣ ମଣି, କୀଚକର ଶବ ସଙ୍ଗେ ଦ୍ରୌପଦୀଙ୍କୁ ବନ୍ଧନ କରି ସତ୍କାର କରିବାକୁ ଘେନି ଗଲେ । ଦ୍ରୌପଦୀ ପୁଣି ନୂତନ ବିପଦଗ୍ରସ୍ତା ହୋଇ ଉଚ୍ଚୈସ୍ୱରରେ ବିଳାପ କଲେ । ଭୀମ ଦ୍ରୌପଦୀଙ୍କ ବିଳାପଧ୍ୱନି ଶ୍ରବଣ କରି ଘଟନାସ୍ଥଳରେ ଉପସ୍ଥିତ ହେଲେ ଏବଂ କୀଚକର ଭ୍ରାତାମାନଙ୍କୁ ନିହତ କରି ଦ୍ରୌପଦୀଙ୍କୁ ମୁକ୍ତ କରି ଦେଲେ । ଦ୍ରୌପଦୀ ରାଜଭବନକୁ ପ୍ରତ୍ୟାଗମନ କରିବାରୁ, ବିରାଟ ରାଜମହିଷୀ ଦ୍ରୌପଦୀଙ୍କୁ କହିଲେ—'ମହାବୀର କୀଚକ ବିରାଟରାଜ୍ୟ

ରକ୍ଷା କରୁଥିଲେ, ମାତ୍ର ମୁଁ ତୁମ୍ଭଙ୍କୁ ଆଶ୍ରୟ ଦେଇ କୀଚକ ସହ ସମସ୍ତ ଭାଇମାନଙ୍କୁ ନିହତ କରାଇଲି । ତୁମ୍ଭେ ଦୟା କରି ସ୍ଥାନାନ୍ତରକୁ ଯାଅ, ମୁଁ ତୁମ୍ଭଙ୍କୁ ମୋର ସ୍ୱାମୀ ଓ ପୁତ୍ରକନ୍ୟାମାନଙ୍କ ପ୍ରାଣ ଭିକ୍ଷା ମାଗୁଅଛି ।' ତାହା ଶୁଣି ଦ୍ରୌପଦୀ କହିଲେ—'ଅଉ ଅଳ୍ପଦିନ ତୁମ୍ଭ ଗୃହରେ ରହି ସ୍ୱସ୍ଥାନକୁ ଯିବି । ଅଉ ଅଳ୍ପଦିନ ଅପେକ୍ଷା କଲେ ଜାଣି ପାରିବ ମୋ ହେତୁ ତୁମ୍ଭର କେତେଦୂର ଇଷ୍ଟାନିଷ୍ଟ ହୋଇଅଛି ।'

"ପାଣ୍ଡବମାନଙ୍କ ଅଜ୍ଞାତବାସ କାଳରେ ଦୁର୍ଯ୍ୟୋଧନ ନାନାସ୍ଥାନକୁ ଗୁପ୍ତଚର ପ୍ରେରଣ କରି ପାଣ୍ଡବମାନଙ୍କୁ ଅନ୍ୱେଷଣ କଲେ; ମାତ୍ର ଚରମାନେ ନାନାଦେଶ ଭ୍ରମଣ କରି ଅକୃତକାର୍ଯ୍ୟ ହୋଇ ପ୍ରତ୍ୟାଗମନ କଲେ । ଯେଉଁମାନେ ବିରାଟରାଜ୍ୟକୁ ଗମନ କରିଥିଲେ ସେମାନେ କୀଚକର ନିଧନ ବୃତ୍ତାନ୍ତ କୁରୁସଭାରେ ବିବୃତ କଲେ । ଏହା ଶ୍ରବଣ କରି ପୂର୍ବେ ବିରାଟରାଜକର୍ତ୍ତୃକ ଅପମାନିତ ତ୍ରିଗର୍ତ୍ତରାଜ ସୁଶର୍ମା କହିଲେ—'କୀଚକ ନିଧନରେ ବର୍ତ୍ତମାନ ବିରାଟରାଜ୍ୟ ବୀରଶୂନ୍ୟ ହୋଇଅଛି, ବର୍ତ୍ତମାନ ଭବଦ୍ୱିଧିକରୁ ବିରାଟରାଜ୍ୟ ଆକ୍ରମଣ କରି ବିରାଟର ଭୂରିବିବିଧ ଗୋଧନ ହରଣ କରି ଆଣିଲେ ଆମ୍ଭମାନଙ୍କର ରାଜ୍ୟଧନାଦିର ସଙ୍ଗେ ବଳ ବୃଦ୍ଧି ହେବ ।' ଦୁର୍ଯ୍ୟୋଧନ, କର୍ଣ୍ଣ, ଶକୁନି ଆଦିଙ୍କ ଏହି ପ୍ରସ୍ତାବ ସଙ୍ଗତ ବିବେଚିତ ହେବାରୁ ହୃଷ୍ଟଚିତ୍ତରେ ସମରାୟୋଜନ କଲେ । ସୁଶର୍ମା ଚତୁରଙ୍ଗସୈନ୍ୟସହ ଏକ ଦିଗରୁ ବିରାଟରାଜ୍ୟ ଆକ୍ରମଣ କରିବାରୁ, ବିରାଟରାଜ ଯୁଧିଷ୍ଠିର, ଭୀମ, ନକୁଳ, ଓ ସହଦେବ ସହ ସସୈନ୍ୟରେ ଯୁଦ୍ଧ ଯାତ୍ରା କଲେ । ସୁଶର୍ମା ବିରାଟରାଜାଙ୍କୁ ପରାଜିତ ଓ ବନ୍ଦୀ କରି ସ୍ୱସ୍ଥାନକୁ ଯାତ୍ରା କଲେ । ଯୁଧିଷ୍ଠିର ଭୀମଙ୍କୁ ପ୍ରେରଣ କରି ବିରାଟଙ୍କୁ ମୁକ୍ତ ଏବଂ ସୁଶର୍ମାଙ୍କୁ ବନ୍ଦୀ କରି ଆଣିଲେ । ବିରାଟ ଯୁଧିଷ୍ଠିରଙ୍କ ଅନୁରୋଧରେ ସୁଶର୍ମାଙ୍କୁ ମୁକ୍ତିଦାନ କଲେ ।

"ଯେଉଁ ସମୟରେ ବିରାଟ ସୁଶର୍ମାଙ୍କ ସହ ଯୁଦ୍ଧରେ ପ୍ରବୃତ୍ତ ଥିଲେ, ସେହି ସମୟରେ ଦୁର୍ଯ୍ୟୋଧନ, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଅଶ୍ୱତ୍ଥାମା, ଶକୁନି ପ୍ରଭୃତିବୀର ସହ ସସୈନ୍ୟରେ ଆଗମନ କରି, ଅନ୍ୟଦିଗରୁ ବିରାଟ-ରାଜ୍ୟରେ ପ୍ରବିଷ୍ଟ ହୋଇ ଗୋଧନ ହରଣ କଲେ । ବିରାଟକୁମାର ତରୁଣବୟସ୍କ ଉତ୍ତର ଅନ୍ତଃପୁର ମଧ୍ୟରେ ଏହି ସଂବାଦ ପ୍ରାପ୍ତ ହୋଇ ଅତ୍ମଶ୍ଳାଘା ପ୍ରକାଶ କରି କହିଲେ—"କଅଣ କରିବ ଜଣେ ସାରଥି ନାହିଁ, ମୁଁ ଜଣେ ସାରଥି ପାଇଲେ ଏହିକ୍ଷଣି ରଥରେ ଚଢ଼ି କୁରୁମାନଙ୍କୁ ପ୍ରତିଫଳ ଦେଇ ଗୋଧନ ଘେନି ଆସନ୍ତି" । ବୃହନ୍ନଳାରୂପୀ ଅର୍ଜ୍ଜୁନ ଏହା ଶ୍ରବଣ କରି ଉତ୍ତରଙ୍କ ସାରଥି ହେବାକୁ ଅଙ୍ଗୀକାର କଲେ । ବୃହନ୍ନଳା ଯେତେବେଳେ ଉତ୍ତରଙ୍କୁ ରଥରେ ଘେନି କୁରୁସୈନ୍ୟ ନିକଟରେ ଉପସ୍ଥିତ ହେଲେ, ବହୁଯୋଜନବ୍ୟାପୀ ଅସଂଖ୍ୟ କୁରୁସୈନ୍ୟଙ୍କୁ ଦର୍ଶନ କରି ଉତ୍ତରଙ୍କର ହୃତ୍‌କମ୍ପ ଉପସ୍ଥିତ ହେଲା । ତାଙ୍କର ଯୁଦ୍ଧ କରିବା ତେଣିକି ଥାଉ ସେ ରଥ ତ୍ୟାଗ କରି ଉର୍ଦ୍ଧ୍ୱଶ୍ୱାସରେ ପଳାୟନ କଲେ । ଅର୍ଜ୍ଜୁନ ତାଙ୍କର ପଶ୍ଚାଦ୍ଧାବିତ ହୋଇ ତାହାଙ୍କୁ ଧୃତ ଏବଂ ସ୍ୱୀୟ ପରି-ଚୟ ଦେଇ ଆଶ୍ୱାସିତ କଲେ । ଅର୍ଜ୍ଜୁନ ଶମୀବୃକ୍ଷରୁ ଅସ୍ତ୍ରଶସ୍ତ୍ରାଦି ଘେନି ସ୍ୱୟଂ ରଥୀ ଏବଂ ଉତ୍ତରଙ୍କୁ ସାରଥି କରି ଯୁଦ୍ଧରେ ଅଗ୍ରସର ହେଲେ । ପ୍ରଥମେ ଅର୍ଜ୍ଜୁନ ଗୋଧନବେଷ୍ଟିତ ସୈନ୍ୟମାନଙ୍କୁ ନିହତ କରି ଗୋଧନମାନଙ୍କୁ ମୁକ୍ତ କରି ଦେଲେ । ତଦନନ୍ତର ଦ୍ରୋଣ, କର୍ଣ୍ଣ, କୃପା-ଚାର୍ଯ୍ୟ, ଅଶ୍ୱତ୍ଥାମା, ଭୀଷ୍ମ, ଦୁଃଶାସନ ପ୍ରଭୃତି ମହାରଥମାନଙ୍କୁ ଯୁଦ୍ଧରେ ପରାଜିତ କଲେ । ଏକାକୀ ଅର୍ଜ୍ଜୁନ କର୍ତ୍ତୃକ ସସୈନ୍ୟରେ ପରାଜିତ ହୋଇ ଦୁର୍ଯ୍ୟୋଧନ ହସ୍ତିନାକୁ ପ୍ରସ୍ଥାନ କଲେ । ଅର୍ଜ୍ଜୁନ ଶମୀବୃକ୍ଷ ନିକଟକୁ ଆସି ପୁଣି ଅସ୍ତ୍ରମାନଙ୍କୁ ବୃକ୍ଷରେ ରକ୍ଷା କରି ପୂର୍ବପରି ନାରୀ-ବେଶ ଧାରଣ କଲେ, ଏବଂ ଉପଯୁକ୍ତ ସମୟ ନ ହେବା ପର୍ଯ୍ୟନ୍ତ ଏହି

ବିଷୟ ପ୍ରକାଶ କରିବାକୁ ଉତ୍ତରଙ୍କୁ ନିଷେଧ କଲେ । ଉତ୍ତର ପୂର୍ବପରି ରଥୀ ଏବଂ ଅର୍ଜୁନ ସାରଥି ହୋଇ ରାଜଭବନକୁ ପ୍ରତ୍ୟାଗମନ କଲେ । ବିରାଟରାଜ ଏହି ଜୟସଂବାଦ ପ୍ରାପ୍ତିରେ ବିସ୍ମିତ ହୋଇ, ଉତ୍ତର କି ଉପାୟରେ ଦୁର୍ନିବାର କୁରୁସୈନ୍ୟଙ୍କୁ ପରାଜିତ କରିଅଛନ୍ତି ପ୍ରଶ୍ନ କରିବାରୁ, ଉତ୍ତର କହିଲେ—'ଏକ ଦେବକୁମାରଙ୍କ ପ୍ରସାଦରୁ ଜୟଲାଭ ହୋଇଅଛି, ଅଳ୍ପଦିନ ଉତ୍ତାରୁ ସେହି ଦେବକୁମାର ଆପଣଙ୍କୁ ଦର୍ଶନ ଦେବେ ।'

"ଏହା ଉତ୍ତାରୁ ଦିନେ ଯୁଧିଷ୍ଠିର ଦ୍ରୌପଦୀ ସହ ବିରାଟରାଜସିଂହାସନରେ ଉପବିଷ୍ଟ ହେଲେ । ଭୀମ ରାଜଛତ୍ର ଧାରଣ ଏବଂ ନକୁଳ ସହଦେବ ଚାମରବ୍ୟଜନ କାର୍ଯ୍ୟରେ ନିଯୁକ୍ତ ହେଲେ । ଅର୍ଜୁନ କରଯୋଡ଼ରେ ରାଜସମକ୍ଷରେ ଦଣ୍ଡାୟମାନ ହେଲେ । ସଭାପାଳମାନେ ଏହା ଦର୍ଶନ କରି ବିରାଟରାଜ ସମକ୍ଷରେ ଏହି ବିଷୟ ନିବେଦନ କରିବାରୁ, ବିରାଟନୃପତି ପୁତ୍ରସହ ରାଜସଭାକୁ ଆଗମନ କରି ବିସ୍ମିତ ଓ କ୍ରୁଦ୍ଧ ହୋଇ କହିଲେ—'ହେ କଙ୍କ ଆମ୍ଭେ ତୁମ୍ଭପ୍ରତି ଯେଉଁ ଅନୁଗ୍ରହ ପ୍ରଦର୍ଶନ କରୁଁ ତୁମ୍ଭେ ତାହାର ଉପଯୁକ୍ତ ପ୍ରତିଦାନ କଲ, ଆମ୍ଭଙ୍କୁ ସମ୍ମୁଖରେ ଦଣ୍ଡାୟମାନ ଦେଖି ସୁଦ୍ଧା ସମ୍ଭ୍ରମ ପ୍ରକାଶାର୍ଥ ସିଂହାସନ ତ୍ୟାଗ କରୁ ନାହଁ ।' ଅର୍ଜୁନ ଯୁଧିଷ୍ଠିରଙ୍କ ଏବଂ ଅନ୍ୟାନ୍ୟ ଭ୍ରାତା ଏବଂ ଦ୍ରୌପଦୀଙ୍କର ପ୍ରକୃତ ପରିଚୟ ଦେବାରୁ, ବିରାଟ ସମ୍ଭ୍ରମରେ ରାଜରାଜେଶ୍ୱର ଯୁଧିଷ୍ଠିରଙ୍କ ପାଦତଳରେ ପତିତ ହୋଇ କ୍ଷମା ପ୍ରାର୍ଥନା କଲେ । ଯୁଧିଷ୍ଠିର ବିରାଟରାଜଙ୍କୁ ଆଶ୍ୱାସିତ କରି ତାହାଙ୍କ ଭବନରେ ପରମସୁଖରେ ଏକବର୍ଷ କାଳ ଅଜ୍ଞାତବାସ କରି ଅଛନ୍ତି ବୋଲି କୃତଜ୍ଞତା ପ୍ରକାଶ କଲେ । ବିରାଟରାଜ୍ୟରେ ପାଣ୍ଡବମାନଙ୍କ ପ୍ରକାଶ ହୋଇଅଛି ସମ୍ବାଦ ପାଇ ସପୁତ୍ର ଦ୍ରୁପଦ, କୃଷ୍ଣ, ସାତ୍ୟକି, ଅଭିମନ୍ୟୁ ପ୍ରଭୃତି ବିରାଟରାଜ୍ୟକୁ

ଆଗମନ କଲେ । ବିରାଟରାଜ ସ୍ୱୀୟ କନ୍ୟା ଉତ୍ତରାଙ୍କ ସଙ୍ଗେ ଅଭି-ମନ୍ୟୁଙ୍କ ବିବାହ ଦେଇ ପାଣ୍ଡବମାନଙ୍କ ସଙ୍ଗେ ବନ୍ଧୁତାସୂତ୍ରରେ ଅବଦ୍ଧ ହେଲେ ।"

ଲୀଳାବତୀ—ଦ୍ରୌପଦୀ ରାଜକନ୍ୟା ଓ ରାଜରାଜେଶ୍ୱରଙ୍କ ପତ୍ନୀ ହୋଇ କେତେ ଦୁଃଖ ସହିଲେ । ପଛକୁ ପୁଣି ବିରାଟଙ୍କ ଘରେ ଦାସୀ-ପଣ କରିବାକୁ ପଡ଼ିଲା । ଏଥି ନିମନ୍ତେ ଲୋକେ କହନ୍ତି ପଞ୍ଚ ଚିରଦିନ କାହାର ସୁଖରେ ଯାଏ ନାହିଁ ?

ପଦ୍ମାବତୀ—ଅଚ୍ଛା ଅଈ, ଦ୍ରୌପଦୀ କଅଣ ଏହି ତେରବର୍ଷ ଯାକ ବେଣୀ ମୁକୁଳା ରଖିଥିଲେ ?

ଅଈ—ସେମାନେ କ ତୁମ୍ଭ ଅମ୍ଭ ପରି ମନୁଷ୍ୟ ଥିଲେ ଯେ ଆଜି ଗୋଟାଏ କଥା କହି, କାଲି ତାହା ପାସୋର ପକାଇବେ ? ସେମାନେ ଯେଉଁ ପ୍ରତିଜ୍ଞା କରୁଥିଲେ ପ୍ରାଣ ଥିବା ଯାଏ ତାହା ପାଳନ କରିବାକୁ ଯତ୍ନ କରୁଥିଲେ । ଯେ ଆପଣାର କଥା ରକ୍ଷା ନ କରେ ତାହାକୁ କେହି ମନୁଷ୍ୟ କହନ୍ତି ନାହିଁ ।

କିଶୋମଣି—ଅଈ, ପାଣ୍ଡବମାନେ ସେହିଠୁଁ କଅଣ କଲେ ?

ଅଈ—ଆଜି ଏହିଠୁଁ ଥାଉ, ପୁଣି କାଲି କହିବି ।



## ଚତୁର୍ଥ ସନ୍ଧ୍ୟା ।

# ମହାଭାରତ ।

---

ଜଣାମଣି—ଅଭିମନ୍ୟୁଙ୍କ ବିବାହ ଉତ୍ତାରୁ ପାଣ୍ଡବମାନେ କଅଣ କଲେ ।

ଆଈ—"ଅଭିମନ୍ୟୁଙ୍କ ବିବାହ ଉତ୍ତାରୁ ଦ୍ରୁପଦ, ବିରାଟ ପ୍ରଭୃତି ପାଣ୍ଡବପକ୍ଷୀୟ ନରପତିମାନେ ଏବଂ କୃଷ୍ଣ, ସାତ୍ୟକି ପ୍ରଭୃତି ମହାବୀରମାନେ ବିରାଟରାଜସଭାରେ ପାଣ୍ଡବମାନଙ୍କ ସଙ୍ଗେ ମନ୍ତ୍ରଣା କରି, ଅର୍ଦ୍ଧରାଜ୍ୟ ଦେବା ସକାଶେ ଦୁର୍ଯ୍ୟୋଧନଙ୍କଠାକୁ ଦୂତ ପ୍ରେରଣ କଲେ । ଦୁର୍ଯ୍ୟୋଧନ ଅର୍ଦ୍ଧରାଜ୍ୟ ପ୍ରଦାନ ନ କଲେ ଯୁଦ୍ଧ ଅବଶ୍ୟ ଅନିବାର୍ଯ୍ୟ ଜାଣି ଯୁଧିଷ୍ଠିର ଯୁଦ୍ଧରେ ସହାୟତା କରିବା ସକାଶେ ନରପତିମାନଙ୍କଠାକୁ ଦୂତ ପ୍ରେରଣ କଲେ । ଯୁଧିଷ୍ଠିର ଯୁଦ୍ଧର ଉଦ୍ୟୋଗ କରୁଅଛନ୍ତି ଅବଗତ ହୋଇ ଦୁର୍ଯ୍ୟୋଧନ ମଧ୍ୟ ସମରାୟୋଜନ ଏବଂ ସ୍ୱପକ୍ଷୀୟ ନରପତିମାନଙ୍କଠାକୁ ଦୂତ ପଠାଇଲେ । ଯୁଧିଷ୍ଠିର ଯୁଦ୍ଧରେ କୃଷ୍ଣଙ୍କର ସହାୟତା ପ୍ରାର୍ଥନା କରି ଅର୍ଜ୍ଜୁନଙ୍କୁ ଦ୍ୱାରକା ପ୍ରେରଣ କଲେ । ଯେଉଁ ସମୟରେ ଅର୍ଜ୍ଜୁନ ଦ୍ୱାରକାରେ କୃଷ୍ଣଙ୍କ ପ୍ରାସାଦରେ ଉପସ୍ଥିତ ହେଲେ, ଦୁର୍ଯ୍ୟୋଧନ ମଧ୍ୟ ସେହି ଉଦ୍ଦେଶ୍ୟରେ ସେହି ସମୟରେ ସେହିଠାରେ ଉପସ୍ଥିତ ହେଲେ । ଅର୍ଜ୍ଜୁନଙ୍କ ସମକ୍ଷରେ କୃଷ୍ଣ ଦୁର୍ଯ୍ୟୋଧନଙ୍କୁ କହିଲେ—"କୁରୁପାଣ୍ଡବ ଉଭୟ ପକ୍ଷ ମୋର ସମାନ ଆତ୍ମୀୟ, ଉଭୟଙ୍କ ମଧ୍ୟରେ ଯୁଦ୍ଧ ଉପସ୍ଥିତ ହେଲେ, ମୁଁ କୌଣସି ପକ୍ଷରେ ଅସ୍ତ୍ର ଧାରଣ କରିବି ନାହିଁ । ମୋର ଅର୍ବୁଦସଂଖ୍ୟକ ଅଜେୟ ନାରାୟଣୀ ସେନା ଅଛନ୍ତି, ଆପଣ ନିରସ୍ତ୍ର ମତେ ଗ୍ରହଣ କରିବେ କିମ୍ବା ଅଜେୟ ରଣକୁଶଳ ଅର୍ବୁଦସଂଖ୍ୟକ ସୈନ୍ୟ ଗ୍ରହଣ କରିବେ, ବିଚାର କରି ନିର୍ବାଚନ କରନ୍ତୁ ।"

ଅପରିଣାମଦର୍ଶୀ ଦୁର୍ଯ୍ୟୋଧନ କୃଷ୍ଣଙ୍କ ପରିବର୍ତ୍ତରେ ନାରାୟଣୀସେନା ଗ୍ରହଣ କରି ଆପଣାକୁ କୃତାର୍ଥ ମଣିଲେ । ଅର୍ଜ୍ଜୁନ କରଯୋଡ଼ରେ କୃଷ୍ଣଙ୍କୁ କହିଲେ—'ଯୁଦ୍ଧକ୍ଷେତ୍ରରେ ଆପଣ ମୋର ସାରଥ୍ୟ ଗ୍ରହଣ କଲେ ମୁଁ ସିଦ୍ଧମନୋରଥ ହେବି ।' କୃଷ୍ଣ ଅର୍ଜ୍ଜୁନସହ ବିରାଟରାଜ୍ୟକୁ ଏବଂ ଦୁର୍ଯ୍ୟୋଧନ ନାରାୟଣୀ ସେନା ଘେନି ହସ୍ତିନାକୁ ପ୍ରସ୍ଥାନ କଲେ ।

କୁରୁପାଣ୍ଡବଙ୍କର ମହାସମର ନିବାରଣ ଉଦ୍ଦେଶ୍ୟରେ ଶ୍ରୀକୃଷ୍ଣ ପାଣ୍ଡବପକ୍ଷୀୟ ଦୌତ୍ୟ ସ୍ୱୀକାର କରି ସ୍ୱୟଂ କୁରୁସଭାରେ ଉପସ୍ଥିତ ହେଲେ । କୃଷ୍ଣ ଏବଂ ଅନ୍ୟାନ୍ୟ ଅନେକ ଜ୍ଞାନବୃଦ୍ଧ ପାଣ୍ଡବମାନଙ୍କୁ ରାଜ୍ୟାଂଶ ପ୍ରଦାନରେ ଦୁର୍ଯ୍ୟୋଧନଙ୍କୁ ବହୁତ ଅନୁରୋଧ ଏବଂ ବଂଶକ୍ଷୟକାରୀ ସମର ନିବାରଣାର୍ଥେ ବହୁତ ସଦୁପଦେଶ ଦେଲେ ସୁଦ୍ଧା ସେ ତାହା ଗ୍ରହଣ କଲେ ନାହିଁ । ଅବଶେଷରେ କୃଷ୍ଣ ପଞ୍ଚପାଣ୍ଡବଙ୍କ ସକାଶେ ପଞ୍ଚଗ୍ରାମ ପ୍ରାର୍ଥନା କଲେ । ଦୁର୍ଯ୍ୟୋଧନ ତାହା ଶ୍ରବଣ କରି କହିଲେ—'ପଞ୍ଚଗ୍ରାମ ଦେବା ତେଣିକି ଥାଉ, ମୁଁ ତୀକ୍ଷ୍ଣ ସୂଚ୍ୟଗ୍ରପରିମାଣ ଭୂମି ସୁଦ୍ଧା ପାଣ୍ଡବଙ୍କୁ ଦେବି ନାହିଁ, ଏହା ମୋର ଦୃଢ଼ ପ୍ରତିଜ୍ଞା ।" ଦୁର୍ଯ୍ୟୋଧନ ଏହା କହି କୃଷ୍ଣ, ବିଦୁର, ଭୀଷ୍ମ ପ୍ରଭୃତିଙ୍କ ପ୍ରତି ଅନାଦର ପ୍ରକାଶ କରି, କର୍ଣ୍ଣ, ଶକୁନି, ଓ ଦୁଃଶାସନ ସହ ସଭାରୁ ପ୍ରସ୍ଥାନ କଲେ । କୃଷ୍ଣ ଆଉ ଥରେ ଦୁର୍ଯ୍ୟୋଧନଙ୍କୁ ସତ୍‌ମାର୍ଗରେ ଆଣିବାକୁ ଚେଷ୍ଟା କରି ଅକୃତକାର୍ଯ୍ୟ ହେଲେ ।

କୃଷ୍ଣ ହସ୍ତିନାରୁ ପ୍ରତ୍ୟାଗମନ କାଳରେ କର୍ଣ୍ଣଙ୍କ ସଙ୍ଗେ ସାକ୍ଷାତ୍ କରି କହିଲେ— ତୁମ୍ଭେ କୁନ୍ତୀସୁତ ହୋଇ ଅପର ସହୋଦରମାନଙ୍କ ବିପକ୍ଷରେ ଅସ୍ତ୍ରଧାରଣ କରିବ ? ତୁମ୍ଭେ ପାଣ୍ଡବପକ୍ଷକୁ ଗଲେ ପଞ୍ଚପାଣ୍ଡବଙ୍କର ପୂଜନୀୟ ହୋଇ ରାଜ୍ୟେଶ୍ୱର ହେବ । ' ଏହା ଶୁଣି କର୍ଣ୍ଣ କହିଲେ—'କୁନ୍ତୀ ମୋର ଗର୍ଭଧାରିଣୀ ତାହା ମୁଁ ଅନବଗତ ନୁହେଁ,

ମାତ୍ର ଦୁର୍ଯ୍ୟୋଧନ ପ୍ରସାଦରେ ରାଜଶ୍ରୀ ସୁଖ ଭୋଗ କରି, ସମ୍ପଦକାଳର ବନ୍ଧୁ ହୋଇ ବିପଦକାଳରେ ଦୁର୍ଯ୍ୟୋଧନଙ୍କୁ କିପରି ତ୍ୟାଗ କରିବି ? ଆପଣ ଯେଉଁ ପକ୍ଷର ଅଣ୍ଡପ୍ରସ୍ଥ ସେ ପକ୍ଷର ଜୟ ଅବଶ୍ୟମ୍ଭାବୀ, ଆପଣ ଆଉ ମତେ ବୃଥା ଅନୁରୋଧ କରିବେ ନାହିଁ ।' କୃଷ୍ଣ, କର୍ଣ୍ଣ, ଭୀଷ୍ମ ବିଦୁର, କୁନ୍ତୀ ପ୍ରଭୃତିଙ୍କଠାରୁ ବିଦାୟ ଗ୍ରହଣ କରି ଦ୍ୱାରକାରାଜ୍ୟକୁ ଆସି ପାଣ୍ଡବମାନଙ୍କସହ ମିଳିତ ହେଲେ । ଦିନେ କୁନ୍ତୀ କର୍ଣ୍ଣଙ୍କୁ ନିର୍ଜ୍ଜନରେ ପାଣ୍ଡବପକ୍ଷାବଲମ୍ବନ କରିବାକୁ ଅନୁରୋଧ କରିବାରୁ କର୍ଣ୍ଣ କହିଲେ—'ଆପଣ ପଞ୍ଚପୁତ୍ରର ଜନନୀ ଅଟନ୍ତି, ମୁଁ ଅର୍ଜ୍ଜୁନ ବ୍ୟତୀତ ଆପଣଙ୍କର ଅନ୍ୟ କୌଣସି ପୁତ୍ରର ପ୍ରାଣବଧରେ ସଚେଷ୍ଟ ହେବି ନାହିଁ । ଏହି ମହାସମରରେ ମୁଁ ଅର୍ଜ୍ଜୁନଙ୍କୁ ନିହତ କରେଁ କିମ୍ବା ଅର୍ଜ୍ଜୁନ ମତେ ନିହତ କରୁ । ଯେମନ୍ତ କରି ହେଉ ଆପଣଙ୍କର ପଞ୍ଚପୁତ୍ର ଜଗତରେ ବିଦ୍ୟମାନ ରହିବେ । ଆପଣଙ୍କର ସତ୍ୟାଶ୍ରୟୀ ଧାର୍ମିକ ପୁତ୍ରମାନେ ଜୟଲାଭ କରିବେ ଏଥିରେ ଆଉ ସନ୍ଦେହ ନାହିଁ ।' କର୍ଣ୍ଣ ଏହା କହି, ଭୂମିଷ୍ଠ ହୋଇ ପ୍ରଣାମ କରି କୁନ୍ତୀଙ୍କଠାରୁ ବିଦାୟଗ୍ରହଣ କଲେ ।

ଯୁଦ୍ଧ ପ୍ରକାଶେ କୁରୁ ଓ ପାଣ୍ଡବମାନେ କୁରୁକ୍ଷେତ୍ରକୁ ଯାତ୍ରା କଲେ । କୁରୁପକ୍ଷରେ ୧୧ ଅକ୍ଷୌହିଣୀ ଏବଂ ପାଣ୍ଡବପକ୍ଷରେ ୭ ଅକ୍ଷୌହିଣୀ ସୈନ୍ୟ ଏକତ୍ରିତ ହୋଇଥିଲେ । ଭୀଷ୍ମ କୁରୁପକ୍ଷର ଏବଂ ଧୃଷ୍ଟଦ୍ୟୁମ୍ନ ପାଣ୍ଡବ ପକ୍ଷର ସେନାପତି ହେଲେ । ଭୀଷ୍ମ ୯ ଦିନ ଘୋରତର ସଂଗ୍ରାମ କରି ପାଣ୍ଡବପକ୍ଷୀୟ ବହୁସୈନ୍ୟ ବିନାଶ କଲେ । ଉଭୟପକ୍ଷରୁ ଅନେକ ମହାବୀର ମଧ୍ୟ ନିହତ ହେଲେ । ଭୀଷ୍ମଙ୍କୁ ଯୁଦ୍ଧରେ ପରାଜୟ କରିବାକୁ ଅକ୍ଷମ ହୋଇ ଯୁଧିଷ୍ଠିର ଯୁଦ୍ଧର ନବମ ଦିବସ ରାତ୍ରରେ ଭୀଷ୍ମ ସନ୍ନିକଟରେ ଉପସ୍ଥିତ ହୋଇ ସେ କିପରି ପରାଜିତ ହେବେ ତାହା ଅବଗତ ହୋଇ ଆସିଲେ । ଦଶମଦିବସରେ ଭୀଷ୍ମ ଘୋରତର ଯୁଦ୍ଧ

କର, ପଶ୍ଚାତ୍ ଅର୍ଜ୍ଜୁନଶରରେ ଅଚ୍ଛନ୍ନ ହୋଇ ରଥରୁ ପତିତ ହେଲେ । ଭୀଷ୍ମଙ୍କ ମୃତ୍ୟୁ ଇଚ୍ଛାଧୀନ ଥିଲା । ସେ ଶରଶଯ୍ୟାରେ ଶାୟିତ ହୋଇ ଶୁଭସମୟରେ ଦେହତ୍ୟାଗ କରିବାର ବାସନା କରି ରହିଲେ ।

ଭୀଷ୍ମ ନିପତିତ ହେବାରୁ କୌରବମାନେ ଆଚାର୍ଯ୍ୟ ଦ୍ରୋଣଙ୍କୁ ଏବଂ ପାଣ୍ଡବମାନେ ଅମିତପରାକ୍ରମ ଭୀମଙ୍କୁ ସେନାପତିତ୍ୱରେ ବରଣ କଲେ । ଦ୍ରୋଣ ଦୁଇଦିନ ଘୋର ସଂଗ୍ରାମ କରି, ତୃତୀୟ ଦିବସରେ ଯେତେବେଳେ ଅର୍ଜ୍ଜୁନ କୁରୁପକ୍ଷୀୟ ନାରାୟଣୀ ସେନାସହ ଯୁଦ୍ଧରେ ଅତ୍ୟନ୍ତ ବ୍ୟସ୍ତ ଥିଲେ ସେହି ସମୟରେ ଚକ୍ରବ୍ୟୂହ ରଚନା କରି ଯୁଧିଷ୍ଠିରଙ୍କୁ ବନ୍ଦୀ କରିବାକୁ ଉଦ୍ୟତ ହେଲେ । କୃଷ୍ଣ ଏବଂ ଅର୍ଜ୍ଜୁନ ବ୍ୟତୀତ ପାଣ୍ଡବପକ୍ଷୀୟ ଅନ୍ୟ କୌଣସି ବ୍ୟକ୍ତି ଚକ୍ରବ୍ୟୂହରେ ପ୍ରବେଶ ଏବଂ ବ୍ୟୂହରୁ ନିର୍ଗମନ ଅବଗତ ନ ଥିଲେ । ଷୋଡ଼ଶବର୍ଷୀୟ କୁମାର ଅଭିମନ୍ୟୁ ବ୍ୟୂହପ୍ରବେଶ ଅବଗତ ଥିଲେ, ମାତ୍ର ନିର୍ଗମନକୌଶଳ ଅବଗତ ନ ଥିଲେ । ଦ୍ରୋଣଙ୍କ ମହାଦର୍ପରେ ଅଗ୍ରସର ହେବାର ଦେଖି ଯୁଧିଷ୍ଠିର ବ୍ୟାକୁଳ ହୋଇ ଅଭିମନ୍ୟୁଙ୍କୁ ବ୍ୟୂହ ପ୍ରବେଶ କରିବାକୁ କହି, ଭୀମ, ଧୃଷ୍ଟଦ୍ୟୁମ୍ନ, ସାତ୍ୟକି ପ୍ରଭୃତିଙ୍କୁ ତତ୍ପଶ୍ଚାତ୍ ଗମନ କରି ବ୍ୟୂହଭଙ୍ଗ କରିବାକୁ ଆଦେଶ ଦେଲେ । ଯୁଧିଷ୍ଠିରଙ୍କ ଆଦେଶରେ ଅଭିମନ୍ୟୁ ବ୍ୟୂହ ପ୍ରବେଶ କଲେ, ମାତ୍ର ଜୟଦ୍ରଥଙ୍କ ଦ୍ୱାରା ନିବାରିତ ହୋଇ ଭୀମ ପ୍ରଭୃତି ବ୍ୟୂହ ପ୍ରବେଶ କରି ପାରିଲେ ନାହିଁ । ସହାୟହୀନ ଅଭିମନ୍ୟୁ ଏକାକୀ ବ୍ୟୂହ ମଧ୍ୟରେ ଘୋରତର ସଂଗ୍ରାମ କରି କ୍ରମାନ୍ୱୟରେ ସମସ୍ତ ବୀରମାନଙ୍କୁ ପରାଜିତ କଲେ । ଅବଶେଷରେ ଦ୍ରୋଣ, କୃପାଚାର୍ଯ୍ୟ, ଅଶ୍ୱତ୍ଥାମା, କର୍ଣ୍ଣ, ଦୁର୍ଯ୍ୟୋଧନ, ଦୁଃଶାସନ, ଏବଂ ଶକୁନି ଏହି ସପ୍ତ ମହାରଥୀ ସମବେତ ହୋଇ ଘୋରତର ଯୁଦ୍ଧରେ ବହୁକଷ୍ଟରେ ଅଭିମନ୍ୟୁଙ୍କୁ ପରାଜିତ କରି ନିହତ କଲେ ।

ଅଭିମନ୍ୟୁଙ୍କ ନିଧନସଂବାଦ ପ୍ରାପ୍ତ ହୋଇ ଅର୍ଜ୍ଜୁନ ଅତ୍ୟନ୍ତ ଶୋକାକୁଳ ହେଲେ । ଜୟଦ୍ରଥ ଅଭିମନ୍ୟୁଙ୍କ ନିଧନର କାରଣ ଅଟନ୍ତି, ଏହା ଅବଗତ ହୋଇ, ତାହାଙ୍କୁ ଆଗାମୀ ଦିବସରେ ନିହତ କରିବାକୁ ଅର୍ଜ୍ଜୁନ ପ୍ରତିଜ୍ଞା କଲେ । ପରଦିବସ ଦୁର୍ଯ୍ୟୋଧନ, ଦ୍ରୋଣ, କର୍ଣ୍ଣ ପ୍ରଭୃତି ବୀରମାନେ ଜୟଦ୍ରଥଙ୍କ ରକ୍ଷାର୍ଥ ବହୁଯତ୍ନ କଲେ ସୁଦ୍ଧା କୃଷ୍ଣଙ୍କ ସହାୟତାରେ ଅର୍ଜ୍ଜୁନ ଜୟଦ୍ରଥଙ୍କୁ ନିହତ କଲେ । ଏହା ଉତ୍ତାରୁ ଭୀମତନୟ ମହାବଳଶାଳୀ ପ୍ରକାଣ୍ଡକାୟ ରାକ୍ଷସ ଘଟୋତ୍କଚ ମହାସମରରେ ଅସଂଖ୍ୟ କୁରୁ ସୈନ୍ୟର ବିନାଶ ସାଧନ କରି, କର୍ଣ୍ଣଶରରେ ନିହତ ହେଲେ । ପଞ୍ଚମଦିବସରେ ଦ୍ରୋଣ ଘୋର ସଂଗ୍ରାମ କରୁ୨ ସ୍ୱପୁତ୍ର ଅଶ୍ୱତ୍ଥାମାଙ୍କ ମିଥ୍ୟା ମୃତ୍ୟୁସଂବାଦ ପ୍ରାପ୍ତିରେ ଯେତେବେଳେ ଶୋକାର୍ତ୍ତ ହୋଇ ଧନୁର୍ବାଣ ତ୍ୟାଗ କଲେ, ସେହି ସମୟରେ ଧୃଷ୍ଟଦ୍ୟୁମ୍ନ ଆସି ତାହାଙ୍କର ଶିରଚ୍ଛେଦ କଲେ । ଦ୍ରୋଣଙ୍କ ମୃତ୍ୟୁରେ କୁରୁସୈନ୍ୟ ଛିନ୍ନଭିନ୍ନ ହୋଇ ପଳାୟନ କଲେ ।

ଦୁର୍ଯ୍ୟୋଧନ ଏହା ଉତ୍ତାରୁ କର୍ଣ୍ଣଙ୍କୁ ସେନାପତିତ୍ୱରେ ବରଣ କରି ଯୁଦ୍ଧରେ ପ୍ରବୃତ୍ତ ହେଲେ । ପାଣ୍ଡବପକ୍ଷରୁ ଦ୍ରୁପଦ, ବିରାଟ, ଉତ୍ତର ପ୍ରଭୃତି ବୀରମାନେ ବିନଷ୍ଟ ହୋଇଥିଲେ । କୌରବ ପକ୍ଷରୁ ଦୁର୍ଯ୍ୟୋଧନ ଓ ଦୁଃଶାସନ ବ୍ୟତୀତ ଧୃତରାଷ୍ଟ୍ରଙ୍କ ସମସ୍ତ ପୁତ୍ର, ଦୁର୍ଯ୍ୟୋଧନପୁତ୍ର ଲକ୍ଷ୍ମଣ ପ୍ରଭୃତି ନିଧନ ପ୍ରାପ୍ତ ହେଲେ । କର୍ଣ୍ଣଙ୍କ ସେନାପତିତ୍ୱ କାଳରେ ଭୀମ ଦୁଃଶାସନକୁ ପରାଜିତ କରି ସ୍ୱୀୟ ପ୍ରତିଜ୍ଞା ପାଳନାର୍ଥ ତାହାର ହୃଦୟ ବିଦାରଣ ପୂର୍ବକ ରକ୍ତପାନ କଲେ ଏବଂ ସେହି ରକ୍ତାକ୍ତ ହସ୍ତରେ ଗମନ କରି ଦ୍ରୌପଦୀଙ୍କ ବେଣୀ ବନ୍ଧନ କରି ଦେଲେ । ଅର୍ଜ୍ଜୁନ ହସ୍ତରେ କର୍ଣ୍ଣପୁତ୍ର ବୃଷସେନ ନିହତ ହେବାରୁ କର୍ଣ୍ଣ ପୁତ୍ରଶୋକରେ ସନ୍ତପ୍ତ ହୋଇ ତୁମୁଳ ସଂଗ୍ରାମ କରି

ଅର୍ଜ୍ଜୁନ ହସ୍ତରେ ନିଧନ ପ୍ରାପ୍ତ ହେଲେ । କର୍ଣ୍ଣ ଦୁଇଦିନ ମାତ୍ର ସେନାପତିତ୍ୱ କରିଥିଲେ ।

କର୍ଣ୍ଣଙ୍କ ପତନ ଉତ୍ତାରୁ ଦୁର୍ଯ୍ୟୋଧନ ଶଲ୍ୟଙ୍କୁ ସେନାପତି କରି ପୁଣି ଯୁଦ୍ଧରେ ପ୍ରବୃତ୍ତ ହେଲେ । ଶଲ୍ୟ ମଧ୍ୟାହ୍ନ ପର୍ଯ୍ୟନ୍ତ ଘୋରତର ଯୁଦ୍ଧ କରି ଯୁଧିଷ୍ଠିରଙ୍କ ହସ୍ତରେ ନିହତ ହେଲେ । ଶଲ୍ୟ ଉତ୍ତାରୁ ସହଦେବଙ୍କ ହସ୍ତରେ ଶକୁନିଙ୍କ ନିଧନ ହେଲା । ଦୁର୍ଯ୍ୟୋଧନ ଭଗ୍ନମନୋରଥ ହୋଇ ରଣ କ୍ଷେତ୍ରରୁ ପଳାୟନ ପୂର୍ବକ ଏକ ହ୍ରଦ ମଧ୍ୟରେ ଆଶ୍ରୟ ଗ୍ରହଣ କଲେ । ପାଣ୍ଡବମାନେ ତାହାଙ୍କ ଅନ୍ୱେଷଣ କରୁ୨ ସେହି ହ୍ରଦ ନିକଟରେ ଉପସ୍ଥିତ ହୋଇ ତାଙ୍କୁ ଯୁଦ୍ଧ କରିବାକୁ ଆହ୍ୱାନ କରିବାରୁ, ଦୁର୍ଯ୍ୟୋଧନ ଭୀମ ସହ ଗଦାଯୁଦ୍ଧରେ ପ୍ରବୃତ୍ତ ହେଲେ । ଭୀମ ପୂର୍ବ ପ୍ରତିଜ୍ଞା ରକ୍ଷାର୍ଥ ଗଦାଘାତରେ ଦୁର୍ଯ୍ୟୋଧନଙ୍କ ଉରୁଭଙ୍ଗ କରିବାରୁ ସେ ଭୂପତିତ ହୋଇ ସଜ୍ଞାଶୂନ୍ୟ ହେଲେ । ତଦନନ୍ତର ଭୀମ ଦୁର୍ଯ୍ୟୋଧନଙ୍କ ଶିରରେ ଚରଣ ପ୍ରହାର କଲେ । ଭୀମଙ୍କ ଏହି ନିଷ୍ଠୁରକାର୍ଯ୍ୟରେ ଯୁଧିଷ୍ଠିର ଅତ୍ୟନ୍ତ ଶୋକାକୁଳିତ ହୋଇ ଦୁର୍ଯ୍ୟୋଧନଙ୍କ ସକାଶେ ବହୁବିଳାପ କଲେ । ଏହା ଉତ୍ତାରୁ କୃଷ୍ଣ ପାଣ୍ଡବମାନଙ୍କୁ ଓ ସାତ୍ୟକିଙ୍କୁ ଘେନି ଶିବିରକୁ ନ ଯାଇ ସ୍ଥାନାନ୍ତରରେ ଯାଇ ରାତ୍ରିବାସ କଲେ ।

କୌରବ ପକ୍ଷରେ ଅଶ୍ୱତ୍ଥାମା, କୃତବର୍ମା ଓ କୃପାଚାର୍ଯ୍ୟ ଏହି ରଥିତ୍ରୟ ଜୀବିତ ଥିଲେ । ଏମାନେ ଦୁର୍ଯ୍ୟୋଧନଙ୍କ ସନ୍ନିକଟରେ ଉପସ୍ଥିତ ହୋଇ ଏକ ରାଜରାଜେଶ୍ୱର ଦୁର୍ଯ୍ୟୋଧନଙ୍କ ଏହି ଶୋଚନୀୟ ଅବସ୍ଥା ଦର୍ଶନ କରି ଅତ୍ୟନ୍ତ ସନ୍ତପ୍ତ ହେଲେ । ଅଶ୍ୱତ୍ଥାମା ସେନାପତିତ୍ୱ ଗ୍ରହଣ କରି 'ଆଜି ପାଣ୍ଡବମାନଙ୍କୁ ସଂହାର କରିବି' ଏହି ପ୍ରତିଜ୍ଞାଦ୍ୱାରା ଦୁର୍ଯ୍ୟୋଧନଙ୍କୁ ଆଶ୍ୱାସିତ କରି ପ୍ରସ୍ଥାନ କଲେ ।

କୃଷ୍ଣ ଏବଂ ପାଣ୍ଡବମାନଙ୍କ ଅନୁପସ୍ଥିତ କାଳରେ ଅଶ୍ୱତ୍ଥାମା ପାଣ୍ଡବ-

ଶିବିରରେ ପ୍ରବେଶ କରି ସୁଷୁପ୍ତାବସ୍ଥାରେ ଧୃଷ୍ଟଦ୍ୟୁମ୍ନ, ଦ୍ରୌପଦୀଙ୍କ ପଞ୍ଚପୁତ୍ର ପ୍ରଭୃତିଙ୍କ ପ୍ରାଣ ନାଶ କଲେ । ଅଶ୍ୱତ୍ଥାମା ଦ୍ରୌପଦୀଙ୍କ ପଞ୍ଚପୁତ୍ରଙ୍କ ମୁଣ୍ଡକୁ ପଞ୍ଚପାଣ୍ଡବଙ୍କ ମୁଣ୍ଡ ଜ୍ଞାନରେ, ଭଗ୍ନଉରୁ ମୁମୂର୍ଷୁ ପ୍ରାୟ ଦୁର୍ଯ୍ୟୋଧନଙ୍କୁ ଦେଖାଇ କହିଲେ,—'ଏହି ପଞ୍ଚପାଣ୍ଡବଙ୍କ ମୁଣ୍ଡ ଗ୍ରହଣ କରନ୍ତୁ, ମୁଁ ସେମାନଙ୍କୁ ବିନାଶ କରିଅଛି ।' ଦୁର୍ଯ୍ୟୋଧନ ଏହା ଶ୍ରବଣ କରି ଅତ୍ୟନ୍ତ ଆନନ୍ଦ ପ୍ରକାଶ କଲେ; ମାତ୍ର ପଶ୍ଚାତ୍ ସେମାନଙ୍କୁ ଦ୍ରୌପଦୀଙ୍କ ପଞ୍ଚପୁତ୍ରଙ୍କ ମୁଣ୍ଡ ବୋଲି ଜାଣି ପାରି, ବଂଶଲୋପ ହେଲା ବୋଲି ବିଷାଦିତ ହୋଇ ପ୍ରାଣତ୍ୟାଗ କଲେ । ପରଦିବସ ଅର୍ଜ୍ଜୁନ ଅଶ୍ୱତ୍ଥାମାଙ୍କ ଶିରୋମଣି ହରଣ କରି ତାହାଙ୍କୁ ନିର୍ଜୀବ କଲେ । କୁରୁପାଣ୍ଡବଙ୍କ ମହାସମର ଅଷ୍ଟାଦଶ ଦିବସରେ ନିଃଶେଷିତ ହେଲା । ଉଭୟପକ୍ଷର ଅଷ୍ଟାଦଶ ଅକ୍ଷୌହିଣୀ ସୈନ୍ୟ ମଧ୍ୟରୁ, କୌରବପକ୍ଷରୁ ଅଶ୍ୱତ୍ଥାମା, କୃପାଚାର୍ଯ୍ୟ ଓ କୃତବର୍ମା ଏହି ତିନିଜଣ, ଏବଂ ପାଣ୍ଡବପକ୍ଷରୁ ପାଣ୍ଡବ ପାଞ୍ଚଭାଇ, କୃଷ୍ଣ, ସାତ୍ୟକି, ଓ ଯୁଯୁତ୍ସୁ ଏହି ଅଠଜଣ ଜୀବିତ ଥିଲେ । ଯେଉଁ କୁରୁକ୍ଷେତ୍ର ଅଳ୍ପଦିନପୂର୍ବେ ବୀରମାନଙ୍କ ଶଙ୍ଖନାଦ ଓ ଆସ୍ଫାଳନ, ପଦାତିମାନଙ୍କ କୋଳାହଳ, ରଥର ନିର୍ଘୋଷ, ଅଶ୍ୱର ହ୍ରେଷାରବ, ମାତଙ୍ଗର ଘନଘୋର ଗର୍ଜ୍ଜନରେ ଦଶଦିଗ କମ୍ପିତ କରୁଥିଲା, ତାହା ମହାଶ୍ମଶାନରେ ପରିଣତ ହୋଇ ଶୃଗାଳ, କୁକ୍କୁର ଶକୁନି ଓ କାକର କର୍କଶରବଦ୍ୱାରା ସଂସାରର ଅନିତ୍ୟତା ଘୋଷଣା କଲା ।

ଧୃତରାଷ୍ଟ୍ର ଏବଂ କୁରୁରମଣୀମାନେ ଏହି ଶୋକସଂବାଦ ପ୍ରାପ୍ତ ହୋଇ ବିଳାପ କରୁ କରୁ କୁରୁକ୍ଷେତ୍ରରେ ଆସି ଉପସ୍ଥିତ ହେଲେ । ନାରୀମାନେ କେହି ସ୍ୱାମୀର, କେହି ଭ୍ରାତାର, କେହି ଜନକର, କେହି ଅବା ଅନ୍ୟ ଆତ୍ମୀୟଙ୍କର କୋଡ଼ରେ ଯେପରି ହୃଦୟବିଦାରକ ସ୍ୱରରେ ବିଳାପ କଲେ ।

ଯୁଧିଷ୍ଠିର ଶୋକାକୁଳା ରମଣୀମାନଙ୍କୁ ବିଳାପ କରିବାର ଦେଖି, ଆପଣାକୁ ଏହି ସମସ୍ତ ଅନର୍ଥର ମୂଳ ଜ୍ଞାନ କରି ଅତ୍ୟନ୍ତ ସନ୍ତପ୍ତ ହେଲେ । କୃଷ୍ଣ ଗାନ୍ଧାରୀ ପ୍ରଭୃତି କୁରୁରମଣୀ ଏବଂ ଧୃତରାଷ୍ଟ୍ରଙ୍କୁ ସାନ୍ତ୍ୱନା, ଓ ଯୁଧିଷ୍ଠିରଙ୍କୁ ଆଶ୍ୱାସିତ କରି, ସମରରେ ନିହତ ବୀରମାନଙ୍କ ଅନ୍ତ୍ୟେଷ୍ଟି-କ୍ରିୟା ନିର୍ବାହ କରିବାକୁ ପରାମର୍ଶ ଦେଲେ ।

ଯୁଧିଷ୍ଠିର ଆତ୍ମୀୟ-ସ୍ୱଜନ ବିରହିତ ଏବଂ ମୋହ ଓ ଶୋକରେ କାତର ହୋଇ ରାଜ୍ୟଶାସନ କରିବାକୁ ଅନିଚ୍ଛୁକ ହେବାରୁ, ଭୀଷ୍ମ ବେଦାଦି ଶାସ୍ତ୍ରସମ୍ମତ ନାନାବିଧ ଉପଦେଶ ପ୍ରଦାନ କରି ତାହାଙ୍କର ମୋହାଦି ଅପନୟନ କଲେ । ଏହା ଉତ୍ତାରୁ ଭୀଷ୍ମ ଯୋଗାବଲମ୍ବନ କରି ତନୁତ୍ୟାଗ କଲେ । ଯୁଧିଷ୍ଠିର ଜ୍ଞାତିହତ୍ୟା ପାପରୁ ମୁକ୍ତ ହେବା ଉଦ୍ଦେ-ଶ୍ୟରେ ଅଶ୍ୱମେଧ ଯଜ୍ଞ କଲେ ।

ଯୁଧିଷ୍ଠିର ଅଶ୍ୱମେଧ ଯଜ୍ଞାରମ୍ଭ କରି ଅଶ୍ୱରକ୍ଷାର୍ଥ ଅର୍ଜ୍ଜୁନଙ୍କୁ ସୈନ୍ୟ ସହ ପ୍ରେରଣ କଲେ । ଯଜ୍ଞାଶ୍ୱ ତ୍ରିଗର୍ତ୍ତ, ପ୍ରାଗ୍‌ଜ୍ୟୋତିଷ, ସିନ୍ଧୁ ପ୍ରଭୃତି ରାଜ୍ୟ ପରିଭ୍ରମଣ କଲା । ଉକ୍ତ ଦେଶର ରାଜାମାନେ ଅଶ୍ୱ ବନ୍ଧନ କରି ରଖି ପଶ୍ଚାତ୍ ଅର୍ଜ୍ଜୁନକର୍ତ୍ତୃକ ପରାଜିତ ହୋଇ ଅଶ୍ୱତ୍ୟାଗ କରି ଅଧୀନତା ସ୍ୱୀକାର କଲେ । ମଣିପୁରରେ ଅଶ୍ୱ ଉପସ୍ଥିତ ହେବାରୁ ମଣିପୁରରାଜ ଅର୍ଜ୍ଜୁନପୁତ୍ର ବଭ୍ରୁବାହନ ପ୍ରଥମେ ଅଶ୍ୱକୁ ବନ୍ଧନ କରି ରଖିଥିଲେ । ପଶ୍ଚାତ୍ ମାତାଙ୍କ ଆଦେଶରେ ଅଶ୍ୱ ଘେନି ଅର୍ଜ୍ଜୁନ ନିକ-ଟରେ ଉପସ୍ଥିତ ହେବାରୁ, ଅର୍ଜ୍ଜୁନ ଅସନ୍ତୋଷ ପ୍ରକାଶ କରି ତାହାଙ୍କୁ ସ୍ୱୀୟ ପୁତ୍ର ବୋଲି ଅସ୍ୱୀକାର କଲେ । ବଭ୍ରୁବାହନ କ୍ରୁଦ୍ଧ ହୋଇ ଅର୍ଜ୍ଜୁନଙ୍କୁ ଯୁଦ୍ଧରେ ପରାଜିତ କରି ହତପ୍ରାୟ କଲେ । ପଶ୍ଚାତ୍ ପିତା ପୁତ୍ରଙ୍କ ମିଳନ ହେଲା । ବଭ୍ରୁବାହନମାତା ଚିତ୍ରାଙ୍ଗଦା ଯଜ୍ଞଦର୍ଶନାର୍ଥ ହସ୍ତିନାକୁ ଏବଂ ବଭ୍ରୁବାହନ ଅଶ୍ୱରକ୍ଷାର୍ଥ ଅର୍ଜ୍ଜୁନ ସମଭିବ୍ୟାହାରରେ

ଯଜ୍ଞ କଲେ । ଯଜ୍ଞାଶ୍ୱ ମଗଧାଦି ଦେଶ ଭ୍ରମଣ କରି ପଶ୍ଚାତ୍ ହସ୍ତିନାକୁ ପ୍ରତ୍ୟାଗମନ କଲା । ଏହାଉତ୍ତାରୁ ଯୁଧିଷ୍ଠିର ସମାଗତ ରାଜାମାନଙ୍କୁ ଯଥାଯୋଗ୍ୟ ସମ୍ମାନ ପ୍ରଦର୍ଶନ ଏବଂ ବ୍ରାହ୍ମଣ ଓ ଦରିଦ୍ରମାନଙ୍କୁ ଧନଦାନ କରି ଯଜ୍ଞକାର୍ଯ୍ୟ ଶେଷ କଲେ ।

ଯୁଧିଷ୍ଠିରଙ୍କ ରାଜ୍ୟଶାସନର ପଞ୍ଚଦଶବର୍ଷ ଉତ୍ତାରୁ ଧୃତରାଷ୍ଟ୍ର, ଗାନ୍ଧାରୀ, କୁନ୍ତୀ, ବିଦୁର, ଓ ସଞ୍ଜୟ ବାନପ୍ରସ୍ଥାଶ୍ରମ ଗ୍ରହଣ କଲେ । ଏମାନଙ୍କର ଅରଣ୍ୟରେ ବାସ କରିବାର ଅଳ୍ପଦିନ ଉତ୍ତାରୁ ବିଦୁର ଯୋଗଦ୍ୱାରା ତନୁତ୍ୟାଗ କଲେ । ଏହା ଉତ୍ତାରୁ ଧୃତରାଷ୍ଟ୍ର, ଗାନ୍ଧାରୀ, ଓ କୁନ୍ତୀ ଦାବାନଳରେ ପ୍ରାଣତ୍ୟାଗ କଲେ । ପାଣ୍ଡବମାନେ ଏମାନଙ୍କ ଶ୍ରାଦ୍ଧାଦି କାର୍ଯ୍ୟ ସମ୍ପନ୍ନ କରି ଶୋକସନ୍ତପ୍ତ ହୃଦୟରେ କାଳଯାପନ କଲେ ।

ଯୁଧିଷ୍ଠିରଙ୍କ ଷଟ୍‌ତ୍ରିଂଶ ବର୍ଷ ରାଜ୍ୟଶାସନ ଉତ୍ତାରୁ, କୃଷ୍ଣଙ୍କ ଆହୂତ ହୋଇ ଅର୍ଜୁନ ଦ୍ୱାରକା ନଗରକୁ ଗମନ କରି ଦେଖିଲେ, ଯଦୁବଂଶୀୟମାନେ ପରସ୍ପର ବିବାଦ କରି ନିହତ ହୋଇଅଛନ୍ତି, ଏବଂ ବଳରାମ ଯୋଗବଳରେ ଓ କୃଷ୍ଣ ବ୍ୟାଧର ଶରାଘାତରେ ଦେହ ତ୍ୟାଗ କରିଅଛନ୍ତି । ଯୁଧିଷ୍ଠିର ଅର୍ଜୁନଠାରୁ ଏହି ସମ୍ବାଦ ପ୍ରାପ୍ତ ହୋଇ, କୃଷ୍ଣଙ୍କ ପୌତ୍ର ବଜ୍ରଙ୍କୁ ଇନ୍ଦ୍ରପ୍ରସ୍ଥରେ ଏବଂ ଅର୍ଜୁନଙ୍କ ପୌତ୍ର ପରୀକ୍ଷିତଙ୍କୁ ହସ୍ତିନାର ସିଂହାସନରେ ଅଭିଷିକ୍ତ କରି, ଦ୍ରୌପଦୀ ଏବଂ ଭ୍ରାତାମାନଙ୍କ ସହ ମହାପ୍ରସ୍ଥାନ କଲେ । ହିମାଳୟାଭିମୁଖେ ଗମନ କରୁଁ ପ୍ରଥମ ଦ୍ରୌପଦୀ, ତଦନନ୍ତର ସହଦେବ, ନକୁଳ, ଅର୍ଜୁନ, ଏବଂ ଭୀମ କ୍ରମରେ ଦେହତ୍ୟାଗ କଲେ । ଯୁଧିଷ୍ଠିର ଏକାକୀ ସ୍ୱଶରୀରରେ ସ୍ୱର୍ଗକୁ ଗମନ କରିଥିବାର ମହାଭାରତରେ ବର୍ଣ୍ଣିତ ଅଛି ।"

ଲୀଳାବତୀ—ଆଇ, ମହାଭାରତରେ ପରୀକ୍ଷିତଙ୍କ କଥା କିଛି ଅଛି ?

ଅଣ—ହଁ ଅଛୁ । ପାଣ୍ଡବମାନଙ୍କ ମହାପ୍ରସ୍ଥାନ ଉତ୍ତାରୁ, ପରୀକ୍ଷିତ ଦୁଷ୍ଟଦମନ ଓ ଶିଷ୍ଟପାଳନ କରି କେତେକ ବର୍ଷ ରାଜତ୍ୱ କଲେ। ତଦନନ୍ତର ବ୍ରାହ୍ମଣ ଅଭିଶାପଗ୍ରସ୍ତ ହୋଇ, ତକ୍ଷକନାଗ ଦଂଶନରେ ପ୍ରାଣତ୍ୟାଗ କଲେ । ପରୀକ୍ଷିତଙ୍କ ଉତ୍ତାରୁ ତାହାଙ୍କ ପୁତ୍ର ଜନ୍ମେଜୟ ସିଂହାସନାରୋହଣ କରି ପିତୃବଧର ପ୍ରତିଶୋଧଗ୍ରହଣ ମାନସରେ ଏକ ମହାସର୍ପଯଜ୍ଞର ଅନୁଷ୍ଠାନ କଲେ । ଏହି ଯଜ୍ଞରେ ଅସଂଖ୍ୟ ସର୍ପ ନିହତ ହେଲେହେଁ, ଦୈବ ପ୍ରତିକୂଳ ହେବାରୁ, ପିତୃବୈରୀ ତକ୍ଷକକୁ ବିନାଶ କରିବାକୁ ସକ୍ଷମ ହେଲେ ନାହିଁ । ବର୍ତ୍ତମାନ ଭାରତବର୍ଷର କୌଣସି୨ ରାଜା ଆପଣାକୁ ଜନ୍ମେଜୟଙ୍କ ବଂଶଧର ଅବା ଚନ୍ଦ୍ରବଂଶୀୟ ବୋଲି ପରିଚୟ ଦିଅନ୍ତି ।

ପଦ୍ମାବତୀ— ଅଣ, ମହାଭାରତ କଥାତ ଶେଷ ହେଲା, କାଲି କି କଥା କହିବ ?

ଅଣ—କାଲି କହିବା ବେଳତ ଅଛୁ, ଆଜି ଘଡି ହେଲାଣି ଶୋଇବା ଚାଲ ।



## ପଞ୍ଚମ ସନ୍ଧ୍ୟା ।

## ସଂଯୁକ୍ତା ।

ଲୀଳାବତୀ—ଆଈ, ପୂର୍ବେ ରାଜକନ୍ୟାମାନଙ୍କର ଯେପରି ସ୍ୱୟମ୍ବର ହେଉଥିଲା, ଏବେ କଅଣ ସେହିପରି ହୁଏ ?

ଆଈ—ସ୍ୱୟମ୍ବର ପ୍ରଥା ଭାରତବର୍ଷରେ ପ୍ରଚଳିତ ଥିଲା, ଅନ୍ୟ ଦେଶରେ ସ୍ୱୟମ୍ବର କଥା ଶୁଣା ଯାଏ ନାହିଁ । ପ୍ରାୟ ୮ଶତ ବର୍ଷ ପୂର୍ବେ ଭାରତବର୍ଷରେ ଥରେ ସ୍ୱୟମ୍ବର ହୋଇଥିଲା । ସେହି ସ୍ୱୟମ୍ବର ଉତ୍ତାରୁ ଭାରତବର୍ଷରୁ ଲକ୍ଷ୍ମୀ ଛାଡ଼ି ଗଲେ, ଆଉ ସ୍ୱୟମ୍ବର କାହିଁ ହେବ ?

କଣାମଣି—ଆଈ, ଆଜି ସେହି ସ୍ୱୟମ୍ବର କଥା କହ ।

ଆଈ—"ପ୍ରାୟ ଅଠଶତବର୍ଷ ହେବ ଆର୍ଯ୍ୟାବର୍ତ୍ତରେ ଦୁଇ ଜଣ ପରାକ୍ରାନ୍ତ ନରପତି ରାଜତ୍ୱ କରୁଥିଲେ । ଜଣଙ୍କ ନାମ ପୃଥୁରାଜ, ସେ ଚୌହାନକୁଳରେ ଜନ୍ମଗ୍ରହଣ କରି ଅଜମୀଢ଼ ଓ ଦୀଲ୍ଲିରେ ଏବଂ ଅପରଙ୍କ ନାମ ରାଠୋରବଂଶଜ ଜୟଚନ୍ଦ୍ର, ସେ କାନ୍ୟକୁବ୍ଜରେ ରାଜ-ପଣ କରୁଥିଲେ । ମହାବୀର ପୃଥୁଙ୍କ ଅନ୍ତଃକରଣ ରାଜୋଚିତ ଗୁଣରେ ପୂର୍ଣ୍ଣ ଥିଲା । ତାହାଙ୍କ ଯଶୋଗାନରେ ସମସ୍ତ ଆର୍ଯ୍ୟାବର୍ତ୍ତ ପରିପୂରିତ ହୋଇ, କପଟୀ ପରଶ୍ରୀକାତର ଜୟଚନ୍ଦ୍ରଙ୍କ ହୃଦୟରେ ବିଦ୍ୱେଷବହ୍ନି ପ୍ରଜ୍ୱଳିତ କରି ଦେଲା । ଜୟଚନ୍ଦ୍ର ଆର୍ଯ୍ୟାବର୍ତ୍ତରେ ସାର୍ବଭୌମିକ କ୍ଷମତା ସ୍ଥାପନ କରି ପୃଥୁଙ୍କ ଯଶୋରାଶିର ବିଲୋପସାଧନ ଉଦ୍ଦେ-ଶ୍ୟରେ ରାଜସୂୟ ଯଜ୍ଞର ଆୟୋଜନ କଲେ । ଜୟଚନ୍ଦ୍ରଙ୍କ ସଂଯୁକ୍ତାନାମ୍ନୀ ଏକ ପରମରୂପବତୀ ଅଲୋକସାମାନ୍ୟା କନ୍ୟା ଥିଲେ । ତାହାଙ୍କ ରୂପ ଓ ଗୁଣ କଥା ଶ୍ରବଣ କରି ଭାରତର ଯାବତୀୟ ନରପତି ତାହାଙ୍କ ପାଣିଗ୍ରହଣାଭିଳାଷୀ ହୋଇଥିଲେ । ରାଜସୂୟ ଯଜ୍ଞର ଅବ୍ୟବହିତ

ପରେ ସଂଯୁକ୍ତାଙ୍କ ସ୍ୱୟମ୍ବର କଥା ପ୍ରଚାରିତ ହେଲା । ଜୟଚନ୍ଦ୍ର ଦୂତ ହସ୍ତରେ ପତ୍ର ପ୍ରେରଣ କରି ଆର୍ଯ୍ୟାବର୍ତ୍ତର ସମସ୍ତ ନରପତିଙ୍କୁ ନିମନ୍ତ୍ରଣ କଲେ । ନରପତିମାନଙ୍କ ମଧ୍ୟରୁ କେହି ମିତ୍ରଭାବରେ, କେହି ଜୟଚନ୍ଦ୍ରଙ୍କ ପରାକ୍ରମରେ ଭୀତ ହୋଇ, କେହି ସଂଯୁକ୍ତାଙ୍କର ପ୍ରତ୍ୟାଶାରେ କାନ୍ୟକୁବ୍ଜରେ ଉପସ୍ଥିତ ହେଲେ । ରାଜସୂୟ ଯଜ୍ଞରେ ଉପସ୍ଥିତ ହେଲେ ଜୟଚନ୍ଦ୍ରଙ୍କ ପ୍ରାଧାନ୍ୟ ସ୍ୱୀକାର କରିବାକୁ ହେବ ମନେ କରି ପୃଥ୍ୱୀ ଏବଂ ତାହାଙ୍କ ଭଗିନୀପତି ଚିତୋରରାଜ ଅମର୍ଷୀ ନିମନ୍ତ୍ରଣ ଗ୍ରହଣ କଲେ ନାହିଁ । ଜୟଚନ୍ଦ୍ର ପୃଥ୍ୱୀଙ୍କୁ ଅପମାନିତ କରିବା ଉଦ୍ଦେଶ୍ୟରେ ତାହାଙ୍କର ଏକ କାଞ୍ଚନମୟ ପ୍ରତିମୂର୍ତ୍ତି ନିର୍ମାଣ କରାଇ ଦ୍ୱାରପାଳସ୍ୱରୂପ ଯଜ୍ଞଶାଳାର ଦ୍ୱାରଦେଶରେ ସ୍ଥାପିତ କଲେ ।

ଏଥିପୂର୍ବେ ସଂଯୁକ୍ତା ପୃଥ୍ୱୀଙ୍କ ଅଲୌକିକ ବୀରତ୍ୱ ବିବରଣ ଶ୍ରବଣ କରି, ମନେ ମନେ ତାହାଙ୍କୁ ପତିତ୍ୱରେ ବରଣ କରିଥିଲେ । ମାତ୍ର ସ୍ୱୀୟ ଜନକଙ୍କର ପୃଥ୍ୱୀଙ୍କ ସମ୍ପ୍ରୀତି ନ ଥିବାରୁ ଭୟରେ ସେହି ବିଷୟ କାହାରିଠାରେ ପ୍ରକାଶ କରି ନ ଥିଲେ । ସ୍ୱୟମ୍ବରସଭାକୁ ପୃଥ୍ୱୀ ଆଗମନ କରିବେ ନାହିଁ, ସଂଯୁକ୍ତା ବର୍ତ୍ତମାନ ଅବଗତ ହୋଇ ଅତ୍ୟନ୍ତ ଭୀତା ଓ ଚିନ୍ତିତା ହେଲେ । ଅନ୍ୟ ଉପାୟ ନ ଦେଖି ଏକ ବିଶ୍ୱାସୀ ବ୍ରାହ୍ମଣ ହସ୍ତରେ ପୃଥ୍ୱୀଙ୍କ ନିକଟକୁ ଏକ ପତ୍ର ପ୍ରେରଣ କଲେ । ତାହାର ମର୍ମ ଏହି—

"କ୍ଷତ୍ରିୟକୁମାରୀ ଯେଉଁ ବୀରଶ୍ରେଷ୍ଠଙ୍କ ପ୍ରତିମୂର୍ତ୍ତି ହୃଦୟମନ୍ଦିରରେ ସ୍ଥାପନ କରି ପୂଜା କରୁଅଛି, ତାହାଙ୍କ ବ୍ୟତୀତ ତାହାର ଗତ୍ୟନ୍ତର ନାହିଁ । ବୀରପୁଙ୍ଗବଙ୍କ ଆସନ ସେ ଅନ୍ୟକୁ ଦେଇ ପାରିବ ନାହିଁ । ଦିଲ୍ଲୀଶ୍ୱରଙ୍କ ସମ୍ପୂର୍ଣ୍ଣ ଅନୁପଯୁକ୍ତା ହେଲେହେଁ ଏ ଦାସୀ ବୀରକୁଳକେଶରୀଙ୍କ ଚରଣାଶ୍ରୟ ଭିକ୍ଷା କରୁଅଛି । ସ୍ୱୟମ୍ବର ସଭାରେ ଉପସ୍ଥିତ

ହୋଇ ଏ ଦାସୀକୁ ଚରଣାଶ୍ରୟ ଦାନ ନ କଲେ, ଦାସୀ ଅମ୍ଳାନ-ବଦନରେ ପ୍ରାଣବିସର୍ଜ୍ଜନ କରି ସ୍ୱୀୟ ସତୀତ୍ୱ ରକ୍ଷା କରିବ । ;

ଆପଣଙ୍କର

ଶ୍ରୀଚରଣାଶ୍ରିତା

ସଂଯୁକ୍ତା ।"

ପୃଥ୍ୱୀ ପତ୍ରପାଠ ଉତ୍ତାରୁ, ବ୍ରାହ୍ମଣଙ୍କୁ ବହୁଧନ ଦାନ କରି ବିଦାୟ କାଳରେ ତାଙ୍କୁ ସହର୍ଷବଦନରେ କହିଲେ—"ଆପଣ ଶୀଘ୍ର ଗମନ କରି ସଂଯୁକ୍ତାଙ୍କୁ କହିବେ ପୃଥ୍ୱୀଙ୍କ ଧମନୀରେ ବିନ୍ଦୁମାତ୍ର ରକ୍ତ ପ୍ରବାହିତ ହେବା ଯାଏ ତାହା ସଂଯୁକ୍ତାଙ୍କ କାର୍ଯ୍ୟରେ ବ୍ୟୟିତ ହେବ ।" |

ରାଜସୂୟ ଯଜ୍ଞ ଏବଂ ସ୍ୱୟମ୍ବର ସମ୍ବାଦ ଦିଗଦିଗନ୍ତରସ୍ଥ ସଙ୍ଗୀତାଚାର୍ଯ୍ୟ, ଶାସ୍ତ୍ରଜ୍ଞପଣ୍ଡିତ, କବି ପ୍ରଭୃତି ଗୁଣୀବ୍ୟକ୍ତିମାନେ ନିମନ୍ତ୍ରିତ ହୋଇଥିଲେ । ପୃଥ୍ୱୀଙ୍କ ରାଜକବି ଚାନ୍ଦ ଜୟଚନ୍ଦ୍ରଙ୍କ ନିମନ୍ତ୍ରଣପତ୍ର ଗ୍ରହଣ କରି କାନ୍ୟକୁବ୍ଜକୁ ଯାତ୍ରା କଲେ । ତାହାଙ୍କ ସମଭିବ୍ୟାହାରରେ ପଞ୍ଚଶତ ଶ୍ରେଷ୍ଠ ବୀର ସର୍ବାଙ୍ଗ ବର୍ମ୍ମାଚ୍ଛାଦିତ ଓ ବିବିଧ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ, ରାଜକବିଙ୍କ ଶରୀରରକ୍ଷକସ୍ୱରୂପେ ଯାତ୍ରା କଲେ ।

ରାଜସୂୟ ଯଜ୍ଞ ସମ୍ପନ୍ନ ହେବାରୁ ସଂଯୁକ୍ତାଙ୍କ ସ୍ୱୟମ୍ବର ସଭା ପ୍ରତିଷ୍ଠିତ ହେଲା । ସମାଗତ ନରପତିମାନେ ସ୍ୱୀୟ ବିଭବ ଓ ସୌନ୍ଦର୍ଯ୍ୟ ପ୍ରଦର୍ଶନ ମାନସରେ ବହୁମୂଲ୍ୟ ବସନଭୂଷଣ ଓ ଅସ୍ତ୍ରଶସ୍ତ୍ରରେ ଭୂଷିତ ଏବଂ ସ୍ୱ ସ୍ୱ ପାରିଷଦମଣ୍ଡଳୀରେ ବେଷ୍ଟିତ ହୋଇ ନିର୍ଦ୍ଦିଷ୍ଟ ମଞ୍ଚରେ ଉପବିଷ୍ଟ ହେଲେ । ସଂଯୁକ୍ତା ବରମାଲ୍ୟହସ୍ତରେ ସଖୀସହ ଗୋଟିଏ ମଞ୍ଚଠାରେ ଉପସ୍ଥିତ ହେବାକ୍ଷଣି, ରାଜଭଟ୍ଟ ମଞ୍ଚାଧିଷ୍ଠିତ ନରପତିଙ୍କ କୁଳମାହାତ୍ମ୍ୟ ଓ ଐଶ୍ୱର୍ଯ୍ୟ ବର୍ଣ୍ଣନ କଲେ । ଭଟ୍ଟଙ୍କ ବର୍ଣ୍ଣନା ଶ୍ରବଣାନନ୍ତର ସଂଯୁକ୍ତା ସେହି ମଞ୍ଚ ତ୍ୟାଗପୂର୍ବକ ମଞ୍ଚାନ୍ତରକୁ ଗମନ କରି ତତ୍ପୋକ୍ତ ମଞ୍ଚରେ

ଅଧିଶ୍ୱର ନରପତିଙ୍କ କୁଳଖ୍ୟାତି ଓ ଐଶ୍ୱର୍ଯ୍ୟ ବିବରଣ ଭଟ୍ଟମୁଖରୁ ଶ୍ରବଣ କଲେ । ଏହିପରି ସଭାର ସବୁଠୁ ଏକ ମଞ୍ଚରୁ ମଞ୍ଚାନ୍ତରକୁ ଭ୍ରମଣ କରି କୌଣସିଠାରେ ପୃଥୁରାଜଙ୍କ ଦର୍ଶନ ନ ପାଇ ଅବଶେଷରେ ସଭାର ଦ୍ୱାରଦେଶରେ ସ୍ଥାପିତ ପୃଥ୍ୱୀଙ୍କ ପ୍ରତିମୂର୍ତ୍ତି ଗଳାରେ ବରମାଲ୍ୟ ଅର୍ପଣ କଲେ ।

ଜୟଚନ୍ଦ୍ର ଏହା ଦର୍ଶନ କରି କ୍ରୋଧରେ ଅଧୀର ହୋଇ ଉଠିଲେ । ତାହାଙ୍କ ମୁଖରୁ ସଂଯୁକ୍ତାଙ୍କ ଉଦ୍ଦେଶ୍ୟରେ କଟୂକ୍ତି ନିର୍ଗତ ନ ହେଉଣୁ, ସର୍ବାଙ୍ଗ ବର୍ମ୍ମାଚ୍ଛାଦିତ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ଏକ ମହାନ୍ ବୀରପୁରୁଷ, ବୀରଜନୋଚିତ ଗର୍ବିତପାଦବିକ୍ଷେପରେ ସଭାମଧ୍ୟ ଦେଇ ଗମନ କରି ସଂଯୁକ୍ତାଙ୍କ ନିକଟରେ ଉପସ୍ଥିତ ହେଲେ । ଜୟଚନ୍ଦ୍ର ସହ ଅନ୍ୟାନ୍ୟ ରାଜନ୍ୟବର୍ଗ ଓ ସଭାରକ୍ଷକ ଅଗଣ୍ୟ ବୀରମଣ୍ଡଳୀ ସମସ୍ତେ ବିସ୍ମିତ ହୋଇ ନିର୍ନିମେଷ ନୟନରେ ତାହାଙ୍କୁ ଅବଲୋକନ କଲେ, ମାତ୍ର କେହି ତାହାଙ୍କ ଗମନରେ ବ୍ୟାଘାତ ପ୍ରଦାନ କରିବାକୁ ସାହସୀ ହେଲେ ନାହିଁ । ବୀରପୁଙ୍ଗବ ହସ୍ତପ୍ରସାରଣ କରନ୍ତେ ସଂଯୁକ୍ତା ସ୍ୱୀୟ କୋମଳକରପଲ୍ଲବ ତାହାଙ୍କ ବର୍ମ୍ମାବୃତ କରୋପରି ନ୍ୟସ୍ତ କଲେ । ସଂଯୁକ୍ତା ଏବଂ ବୀରପୁରୁଷଙ୍କର ଏହି କାର୍ଯ୍ୟ ଦର୍ଶନ କରି, ସଭାସ୍ଥ ବ୍ୟକ୍ତିମାନଙ୍କର ବୀରପୁରୁଷଙ୍କୁ ପୃଥୁରାଜ ବୋଲି ଉପଲବ୍ଧି କରିବାକୁ ଅଧିକ ବିଳମ୍ବ ହେଲା ନାହିଁ ।

ପୃଥୁରାଜ ସ୍ୱୀୟ ରାଜକବି ଚାନ୍ଦଙ୍କ ପରିଚାରକ ବେଶରେ କାନ୍ୟକୁବ୍ଜ ରାଜସଭାକୁ ଆଗମନ କରିଥିଲେ । ପ୍ରସିଦ୍ଧ ପଞ୍ଚଶତ ଚୌହାନ ବୀର ସେମାନଙ୍କ ସମଭିବ୍ୟାହାରୀ ହୋଇଥିଲେ । ସଂଯୁକ୍ତା ବର୍ମ୍ମାବୃତ ପୁରୁଷଙ୍କୁ ପୃଥ୍ୱୀରାଜ ବୋଲି ଜାଣି ପାରି ସହର୍ଷରେ ତାହାଙ୍କ ହସ୍ତ ଧାରଣ କଲେ । ଜୟଚନ୍ଦ୍ର କ୍ରୋଧାନ୍ଧ ହୋଇ କହିଲେ—'ଚୌହାନ ଶୃଗାଳକୁ

ସ୍ଥାଣରେ ବଧ କର ।' ସେହି ମୁହୂର୍ତ୍ତରେ କେତେକଜଣ ରକ୍ଷିସୈନ୍ୟ ଉଲ୍ଲଙ୍ଗ ତରବାରୀ ହସ୍ତରେ ପୃଥୁଙ୍କ ଅଭିମୁଖରେ ଅଗ୍ରସର ହେଲେ । ପୃଥୁ, ଜୟଚନ୍ଦ୍ର ଏବଂ ଆକ୍ରମଣାର୍ଥେ ଅଗ୍ରସର ରକ୍ଷିସୈନ୍ୟଙ୍କ ପ୍ରତି ଘୃଣା-ବ୍ୟଞ୍ଜକ ଦୃଷ୍ଟି ନିକ୍ଷେପ କରି, ସ୍ୱୀୟ କୋଷରୁ ଅସି ନିଷ୍କାଷିତ କଲେ ; ଏବଂ ପରମୁହୂର୍ତ୍ତରେ ତୂର୍ଯ୍ୟନାଦ କଲେ । ସଶସ୍ତ୍ର ବର୍ମ୍ମାବୃତ ପଞ୍ଚଶତ ଚୌହାନ ବୀର ସଭାଦ୍ୱାରଦେଶରେ ସେହି ସଙ୍କେତାପେକ୍ଷାରେ ଥିଲେ; ସେମାନେ ସେହିକ୍ଷଣି ସଭା ମଧ୍ୟରେ ପ୍ରବେଶ କରି, ପୃଥୁଙ୍କୁ ବେଷ୍ଟନ କଲେ । ଏହା ଦର୍ଶନ କରି ଜୟଚନ୍ଦ୍ର ସ୍ୱୀୟ ଅଗଣ୍ୟ ସୈନ୍ୟମାନଙ୍କୁ କହିଲେ—'ସିଂହ ଗୁହାରୁ ଶୃଗାଳ ଲେଉଟି ନ ଯାଉ, ସମସ୍ତଙ୍କୁ ବେଢ଼ି ମାର ।'

ସେହିକ୍ଷଣି ସହସ୍ର୨ ରାଠୋର ସୈନ୍ୟ ଚୌହାନମାନଙ୍କୁ ଚତୁର୍ଦ୍ଦିଗରୁ ଆକ୍ରମଣ କରିବାକୁ ଅଗ୍ରସର ହେଲେ । ପୃଥୁ ଏକ ହସ୍ତରେ ସଂଯୁକ୍ତାଙ୍କ ହସ୍ତ ଧରି ଅନ୍ୟ ହସ୍ତରେ ଆତ୍ମରକ୍ଷା କରୁ୨ ଚୌହାନ ବୀରମାନଙ୍କ ସହ ସଭାର ବହିର୍ଦ୍ଦେଶକୁ ଆଗମନ କଲେ । ସେହିଠାରେ ଅଶ୍ୱବର ସଜ୍ଜିତ ଥିଲା, ପୃଥୁ ସଂଯୁକ୍ତା ସହ ସେହି ଅଶ୍ୱପୃଷ୍ଠରେ ଉପବେଶନ କରି ଦିଲ୍ଲୀ ଅଭିମୁଖରେ ଯାତ୍ରା କଲେ । ପଞ୍ଚଶତ ଚୌହାନ ବୀର ବହୁ ସହସ୍ର ରାଠୋର ସୈନ୍ୟଙ୍କ ସମ୍ମୁଖୀନ ହୋଇ ପୃଥୁ ଓ ସଂଯୁକ୍ତାଙ୍କ ଶରୀର ରକ୍ଷା କରୁ୨ କ୍ରମରେ ପଶ୍ଚାତ୍‌ପଦ ହେଲେ । ପଞ୍ଚଦିବସ କ୍ରମାନ୍ୱୟରେ ଏହିପରି ଯୁଦ୍ଧ ହେଲା । କାନ୍ୟକୁବ୍ଜରୁ ଦିଲ୍ଲୀମାର୍ଗର ବହୁ ଯୋଜନ, ରାଠୋର ସୈନ୍ୟର ଶବରାଶିରେ ସମାଚ୍ଛନ୍ନ ହେଲା । ଏକଦଳ ରାଠୋର ସୈନ୍ୟ ନିହତ ହେଲାକ୍ଷଣି ଅନ୍ୟଦଳ ସେମାନଙ୍କ ସ୍ଥାନ ଅଧିକାର କରି ଚୌହାନମାନଙ୍କୁ ଆକ୍ରମଣ କଲେ, ଏବଂ ସେହି ଦଳର ବିନାଶ ଉତ୍ତାରୁ ତୃତୀୟଦଳ ସେମାନଙ୍କ ସ୍ଥାନ ଅଧିକାର କରି

ବନ୍ଦୀ ହେଲେ । ଏହିପରି ବହୁ ସହସ୍ର ରାଠୋର ବନ୍ଦୀ ହେଲେହେଁ ସେହି ଅଳ୍ପସଂଖ୍ୟକ ଚୌହାନ ବୀରଙ୍କୁ ଅତିକ୍ରମ କରି ପୃଥ୍ୱୀଙ୍କୁ ସ୍ପର୍ଶ କରି ପାରିଲେ ନାହିଁ । ପୃଥ୍ୱୀ ସଂଯୁକ୍ତା ସହ ନିର୍ବିଘ୍ନରେ ଦିଲ୍ଲୀରେ ଉପନୀତ ହେଲେ, ମାତ୍ର ତାହାଙ୍କ ପ୍ରସିଦ୍ଧ ପଞ୍ଚଶତ ବୀରଙ୍କ ଜଣେ ହେଁ ଦିଲ୍ଲୀକୁ ପ୍ରତ୍ୟାଗମନ କଲେ ନାହିଁ । ସମସ୍ତେ ସ୍ୱୀୟ ପ୍ରାଣଦାନ କରି ପ୍ରଭୁ ଓ ପ୍ରଭୁପତ୍ନୀଙ୍କ ଶରୀର ରକ୍ଷା କଲେ । ପୃଥ୍ୱୀ ସଂଯୁକ୍ତାଙ୍କୁ ସ୍ୱୀୟ ମହିଷୀ କରି ପରମ ସୁଖରେ ରାଜ୍ୟଶାସନ କଲେ । ମାତ୍ର ଏହି ସୁଖ ବହୁକାଳ ସ୍ଥାୟୀ ହେଲା ନାହିଁ ।

ଜୟଚନ୍ଦ୍ର ଆପଣାକୁ ଏକାନ୍ତ ଅପମାନିତ ଓ ଉପହାସାସ୍ପଦ ଜ୍ଞାନ କରି ପୃଥ୍ୱୀଙ୍କୁ ପ୍ରତିଫଳଦାନ ମାନସରେ ବହୁ ସହସ୍ର ସୈନ୍ୟ ନେଇ ପୃଥ୍ୱୀରାଜ୍ୟ ଆକ୍ରମଣ କଲେ । ପୃଥ୍ୱୀ ଯୁଦ୍ଧାର୍ଥ ସସୈନ୍ୟରେ ଯାତ୍ରା କଲେ। ଯୁଦ୍ଧଯାତ୍ରାକାଳରେ ସଂଯୁକ୍ତା ସାଶ୍ରୁନୟନରେ ପୃଥ୍ୱୀଙ୍କୁ କହିଲେ—"ତୁମ୍ଭର ଚିରବୈରୀ ହେଲେହେଁ ମୋର ଜନ୍ମଦାତାଙ୍କ ପ୍ରାଣ ରକ୍ଷା କରିବ ।" ଜୟଚନ୍ଦ୍ର ପୃଥ୍ୱୀଙ୍କ କର୍ତ୍ତୃକ ପୁନଃ ପୁନଃ ଯୁଦ୍ଧରେ ପରାଜିତ ହୋଇ ଭଗ୍ନହୃଦୟରେ ସ୍ୱୀୟ ରାଜଧାନୀକୁ ପ୍ରତ୍ୟାଗମନ କଲେ । ପରିଶେଷରେ ଭାରତ କୁଳାଙ୍ଗାର ଜୟଚନ୍ଦ୍ର, ପୃଥ୍ୱୀଙ୍କୁ ପ୍ରତିଶୋଧଦାନ ମାନସରେ, ଅଫଗାନ ପତି ଯବନରାଜ ମହମ୍ମଦଘୋରିଙ୍କୁ ଆହ୍ୱାନ କଲେ । ପ୍ରଥମତଃ ଯବନରାଜ ଘୋରୀ ପ୍ରବଳ ପରାକ୍ରମୀ ପୃଥ୍ୱୀଙ୍କ ସହ ବିବାଦରେ ପ୍ରବୃତ୍ତ ହେବା ଅନୁଚିତ ଜ୍ଞାନରେ ଜୟଚନ୍ଦ୍ରଙ୍କ ପ୍ରସ୍ତାବରେ ସମ୍ମତି ଦାନ କଲେ ନାହିଁ । ମାତ୍ର "ହିନ୍ଦୁ ନରପତିମାନେ ଅନ୍ତର୍ବିରୋଧରେ ହୀନବଳ ହୋଇ ପଛକୁ ଭାରତରେ ମୁସଲମାନମାନଙ୍କର ରାଜ୍ୟ ବିସ୍ତାରର ମାର୍ଗ ପ୍ରଶସ୍ତ କରି ଦେବେ, ବର୍ତ୍ତମାନ ଏହି ଅନ୍ତର୍ବିରୋଧାଗ୍ନିରେ ଆହୁତି ଦାନ କର୍ତ୍ତବ୍ୟ" ଚିନ୍ତା କରି ସମ୍ମତି ଦାନ କଲେ ।

ଯବନସୈନ୍ୟ ଗଜନ୍ୟସୀମାରେ ଉପନୀତ ହୋଇଅଛନ୍ତି ଅବଗତ ହୋଇ ବୀରକେଶରୀ ପୃଥ୍ୱୀ ଅମର୍ଷାମନ୍ତ ସସୈନ୍ୟରେ ଯାତ୍ରା କରି ଥିରୋରୀ କ୍ଷେତ୍ରରେ ଉପସ୍ଥିତ ହେଲେ । ଏହିଠାରେ ଯବନମାନେ ଜୟଚନ୍ଦ୍ର ଏବଂ ତାହାଙ୍କ ପକ୍ଷୀୟ ରାଜନ୍ୟମଣ୍ଡଳଙ୍କ ସୈନ୍ୟସହ ଶିବିର ସନ୍ନିବେଶ କରି ପୃଥ୍ୱୀଙ୍କ ସୈନ୍ୟର ଅପେକ୍ଷା କରୁଥିଲେ । ଦିଲ୍ଲୀ-ପତିଙ୍କ ସୈନ୍ୟର ଏବଂ ଯବନ ସୈନ୍ୟର, ପରସ୍ପରର ସାକ୍ଷାତ୍ ହେବା କ୍ଷଣି, ସେନାପତିମାନଙ୍କ ଆଦେଶାପେକ୍ଷା ନ କରି, ବିପୁଳ ଉତ୍ସାହରେ ପରସ୍ପର ପରସ୍ପରକୁ ଆକ୍ରମଣ କଲେ । ଦାରୁଣ ପ୍ରତିହିଂସା ଗ୍ରହଣାଭି-ଳାଷୀ ଜୟଚନ୍ଦ୍ର ବୃଦ୍ଧ କେଶରୀ ତୁଲ୍ୟ ଭୀମ ପରାକ୍ରମରେ ପୃଥ୍ୱୀଙ୍କୁ ଆକ୍ର-ମଣ କଲେ । ଉଭୟଙ୍କର ଏହି ଦ୍ୱନ୍ଦ୍ୱଯୁଦ୍ଧ ଦର୍ଶନ ମାନସରେ ଉଭୟ ସୈନ୍ୟ କ୍ଷୟଲକ୍ଷଣ ଯୁଦ୍ଧରୁ ବିରତ ହୋଇ ନିଃଶବ୍ଦ ଭାବରେ ଦଣ୍ଡାୟ-ମାନ ହେଲେ । ପରିଶେଷରେ ପୃଥ୍ୱୀଙ୍କ ପ୍ରଚଣ୍ଡ ଅସ୍ତ୍ରାଘାତରେ ଜୟଚନ୍ଦ୍ର ନିରସ୍ତ୍ର ହୋଇ ଭୂପତିତ ହେଲେ । ପୃଥ୍ୱୀ ଜୟଚନ୍ଦ୍ରଙ୍କୁ କହିଲେ— 'ବୃଦ୍ଧ ଗତୋରଗଜ ଜଠିବା ହେତୁରୁ, ସଂଯୁକ୍ତା ଆପଣଙ୍କ ପ୍ରାଣବଧ କରିବାକୁ ନିଷେଧ କରିଅଛନ୍ତି ।" ପରମୁହୂର୍ତ୍ତରେ ଯବନରାଜ ଘୋରି 'ମୋର ପ୍ରାଣବଧ କରିବାକୁ ନିଷେଧ କରି ନାହାନ୍ତି,' ବ୍ୟଙ୍ଗସ୍ୱରରେ କହି ପୃଥ୍ୱୀଙ୍କୁ ଦ୍ୱନ୍ଦଯୁଦ୍ଧରେ ଆହ୍ୱାନ କଲେ । ସୁଶିକ୍ଷିତ ବୀରଦ୍ୱୟ ଘୋର ଜିଘାଂସାର ବଶବର୍ତ୍ତୀ ହୋଇ ପ୍ରମତ୍ତମାତଙ୍ଗ ତୁଲ୍ୟ ଘୋରତର ଯୁଦ୍ଧରେ ପ୍ରବୃତ୍ତ ହେଲେ । ଅବଶେଷରେ ପୃଥ୍ୱୀଙ୍କ ଅବ୍ୟର୍ଥ ଅସ୍ତ୍ରାଘାତ-ରେ ଘୋରି ହତଚେତନ ହୋଇ ଭୂପତିତ ହେଲେ । ଯବନ ସୈନ୍ୟ-ମାନେ ଘୋରିଙ୍କୁ ଘେନି ପଳାୟନ କଲେ ।

ଏହାର ଦୁଇବର୍ଷ ଉତ୍ତାରୁ ଘୋରି ପୁଣି ଭାରତାକ୍ରମଣ କଲେ । ପୃଥ୍ୱୀ ପୂର୍ବାପେକ୍ଷା ଅଧିକ ସୈନ୍ୟ ସଂଗ୍ରହ କରି ବିପୁଳ ଉତ୍ସାହରେ

ଯୁଦ୍ଧଯାତ୍ରା କଲେ । ପୃଥ୍ୱି ତିରୋରୀ ନିକଟବର୍ତ୍ତୀ ଥାନେଶ୍ୱର କ୍ଷେତ୍ରରେ ଉପସ୍ଥିତ ହୋଇ ସ୍ୱୀୟ ସୈନ୍ୟାପେକ୍ଷା ଯବନମାନଙ୍କୁ ନ୍ୟୂନସଂଖ୍ୟକ ଦେଖି, କରୁଣାର୍ଦ୍ର ହୃଦୟରେ ଯବନରାଜ ଘୋରଙ୍କୁ ସ୍ୱଦେଶ ପ୍ରତ୍ୟା-ଗମନରେ ଉପଦେଶ ଦେଲେ । ଘୋର କର୍ତ୍ତବ୍ୟ ନିର୍ଦ୍ଧାରଣ ନିମନ୍ତେ କେତେକଦିନ ଅବସର ଗ୍ରହଣ କଲେ । ତଦନନ୍ତର ଅକସ୍ମାତ୍ ଯବନ-ରାଜ ଦିନେ ଘୋର ଅନ୍ଧକାର ରାତ୍ରିରେ ହଠାତ୍ ହିନ୍ଦୁ ଶିବର ଆକ୍ରମଣ କରି ପୃଥ୍ୱି ଏବଂ ତାହାଙ୍କ ସୈନ୍ୟର ବିନାଶ ସାଧନ କଲେ । ସଂଯୁକ୍ତା ଏହି ସଂବାଦ ପ୍ରାପ୍ତ ହୋଇ ପୃଥ୍ୱିଙ୍କ ଶବ ଅଣାଇ, ସେହି ଶବସହ ଚିତାରୋହଣ କରି ପ୍ରାଣତ୍ୟାଗ କଲେ ।"

ନଣାମଣି—ଆଈ, ପୃଥ୍ୱିଙ୍କ ପରେ ଦୀଲ୍ଲିରେ କେ ରାଜା ହୋଇ-ଥିଲେ ?

ଆଈ—ପୃଥ୍ୱିଙ୍କ ମୃତ୍ୟୁରେ ଭାରତରୁ ହିନ୍ଦୁ ସ୍ୱାଧୀନତା ଏକାବେଳକେ ଅନ୍ତର୍ହିତା ହେଲା । ଯବନମାନେ ଗୋଟିଏ ୨ ପ୍ରଦେଶ ଅଧିକାର କରି କ୍ରମେ ସମଗ୍ର ଭାରତବର୍ଷ ଶାସନାଧୀନ କଲେ । ପ୍ରାୟ ସପ୍ତଶତବର୍ଷ ଦିଲ୍ଲୀସିଂହାସନ ମୁସଲମାନମାନଙ୍କ ଅଧିକାରରେ ଥିଲା । ତାହା ଉତ୍ତାରୁ ଇଂରାଜମାନଙ୍କ ଅଧିକୃତ ହେଲା ।

ଲୀଳାବତୀ—ଈଅଜଇଁର ସର୍ବନାଶ କରାଇ ଜୟଚନ୍ଦ୍ର କେତେ ବର୍ଷ ରାଜତ୍ୱ କଲେ ?

ଆଈ—ଘୋର ଯେଉଁ ବର୍ଷ ପୃଥ୍ୱିଙ୍କୁ ପରାଜିତ କଲେ, ତହିଁର ପର-ବର୍ଷ କାନ୍ୟକୁବ୍ଜ ଆକ୍ରମଣ କରି ଜୟଚନ୍ଦ୍ରଙ୍କୁ ପରାଜିତ କଲେ । ଜୟ-ଚନ୍ଦ୍ର ଏହି ଅପମାନ ସହ୍ୟ କରି ନ ପାରି, ଗଙ୍ଗାଗର୍ଭରେ ନିମଜ୍ଜିତ ହୋଇ ଆତ୍ମହତ୍ୟା କଲେ ।

ପଦ୍ମାବତୀ—ସ୍ୱଦେଶ ଦ୍ରୋହିତାର ଉପଯୁକ୍ତ ଦଣ୍ଡ ।

କଣାମଣି—ଆଈ, ଥାନେଶ୍ୱର କେଉଁଠାରେ ?

ଆଈ—ପୂର୍ବେ ଯେଉଁଠାରେ କୁରୁକ୍ଷେତ୍ର ଯୁଦ୍ଧ ହୋଇଥିଲା, ଥାନେ-ଶ୍ୱର ତାହାର ନିକଟବର୍ତ୍ତୀ ଅଟେ । ଏହିଠାରେ ଆଉ ଦୁଇଥର ଯୁଦ୍ଧ ହୋଇଥିଲା ।

ଲୀଳାବତୀ—ଆଈ, ପୃଥ୍ୱୀ ଏବଂ ଜୟଚନ୍ଦ୍ରଙ୍କ ବଂଶୀୟ କେହି ଏବେ ଅଛନ୍ତି ?

ଆଈ—ପୃଥ୍ୱୀ ଚୌହାନବଂଶୀୟ ଥିଲେ । ବର୍ତ୍ତମାନ ଭାରତର କେତେକ ନରପତି ଏହି ଚୌହାନବଂଶୀୟ ବୋଲି ପରିଚୟ ଦିଅନ୍ତି । ଜୟଚନ୍ଦ୍ରଙ୍କ ବଂଶୀୟମାନେ ମାରବାଡ଼କୁ ଗମନ କରି ନବରାଜ୍ୟ ସ୍ଥାପନ କଲେ । ଯୋଧପୁରରାଜ ସେହି ରାଠୋର ବଂଶୀୟ ଅଟନ୍ତି ।

ଆଜ ଏତିକି ହେଉ । ଶୋଇବା ଚାଲ ।



ଷଷ୍ଠ ସନ୍ଧ୍ୟା ।

## କେତେଗୁଡ଼ିଏ ପଶୁଙ୍କ ବିବରଣ ।

ଅଣ୍ଣ—ଆଜି ତୁମ୍ଭମାନଙ୍କୁ କେତେଗୁଡ଼ିଏ ପଶୁଙ୍କ କଥା କହିବ ।

ପଦ୍ମାବତୀ—ଅଣ୍ଣ, ସିଂହକୁ ପଶୁରାଜ ବୋଲି କାହିଁକି କହନ୍ତି ?

ଅଣ୍ଣ—ସିଂହ ଅନ୍ୟାନ୍ୟ ପଶୁଙ୍କୁ ମାରି ପାରେ ବୋଲି ମନୁଷ୍ୟମାନେ ସିଂହକୁ ପଶୁରାଜ ଆଖ୍ୟା ଦେଇଅଛନ୍ତି ।

ଲୀଳାବତୀ—ମହାବଳ ବାଘଠାରୁ କଅଣ ସିଂହର ବଳ ଅଧିକ ?

ଅଣ୍ଣ—ନା, ପ୍ରାୟ ସମାନ ହେବ । ଏକ ସ୍ଥାନରେ ଗୋଟାଏ ମହାବଳ ବାଘ ଏବଂ ଗୋଟାଏ ସିଂହ ଯୁଦ୍ଧ କରି ଦୁହେଁଯାକ ମରିଗଲେ ।

ନଗାମଣି—ଅଚ୍ଛା ଅଣ୍ଣ, ଏମାନଙ୍କ ବଳ କଅଣ ହାତିର ବଳଠାରୁ ଅଧିକ ହେବ ?

ଅଣ୍ଣ—ନା, ପଶୁମାନଙ୍କ ମଧ୍ୟରେ ହାତୀର ଦେହଟା ଯେପରି ବୃହତ୍, ବଳ ମଧ୍ୟ ସେହିପରି ଅଧିକ । ସିଂହ କିମ୍ବା ବାଘ ହାତୀ ପାଖକୁ ଚଳ କ୍ଷଣି ହଠାତ୍ ଡିଅଁମାରି ତାହା ମୁଣ୍ଡ ଉପରେ ଚଢ଼ି ବସି ତାହାର କର୍ଣ୍ଣମୂଳ, ବେକ, ଆଖି ପ୍ରଭୃତିକୁ ବିଦୀର୍ଣ୍ଣ କରି ପକାନ୍ତି । ହାତୀ ଯନ୍ତ୍ରଣା ଓ ଭୟ-ରେ ଅସ୍ଥିର ହୋଇ ପଡ଼ି ଯାଏ । ମାତ୍ର ଗୋଟାଏ ହାତୀ ମହାବଳ ବାଘକୁ ମଧ୍ୟ ମାରି ପକାଏ ।

ପୂର୍ବେ ଏଦେଶର ବୀରମାନେ ହାତିରେ ଚଢ଼ି ଯୁଦ୍ଧ କରୁଥିଲେ । ଏ ଦେଶର ହାତୀଠାରୁ ଅନାମ ଦେଶ ଓ ଆଫ୍ରିକାର ହାତୀ ବଡ଼ ହୁଅନ୍ତି । ହାତିର କେହି ଅନିଷ୍ଟ କଲେ ମନେ ରଖିଥାଏ ଏବଂ ସମୟ ବୁଝି ତାହାର ପ୍ରତିଫଳ ଦିଏ । ହାତୀ ଅପଣାର ମାହୁନ୍ତକୁ ଅତ୍ୟନ୍ତ ଭଲ



ଯାଏ । ଚିତ୍ରରେ ଦେଖ ମାହୁନ୍ତର ପିଲାକୁ ହାତୀ ଖଣ୍ଡିଏ ପଙ୍ଖା ଯେନ ବିଞ୍ଚୁଅଛି । ମାହୁନ୍ତର ସ୍ତ୍ରୀ ଯେତେବେଳେ କୌଣସି କାର୍ଯ୍ୟକୁ ଯାଏ ପିଲାକୁ ହାତୀ ପାଖରେ ରଖିଯାଏ । ହାତୀ ପିଲା ଦେହରେ ମଶା ଝିମ୍ପା ମାଛି ବସିବାକୁ ଦିଏ ନାହିଁ ।

ତୁମ୍ଭେମାନେ ଗଣ୍ଡା ଦେଖି ନାହଁ; ଗଣ୍ଡା ଦେଖିବାକୁ ଗୋଟିଏ



ସାନ ହାତୀ ପରି । ଗଣ୍ଡାର ନାକ ଉପରେ ଗୋଟିଏ ଖଡ୍ଗ ଥାଏ । ଏହି ଖଡ୍ଗ ଭୟରେ ଏମାନଙ୍କ ପାଖକୁ ହିଂସ୍ର ପଶୁମାନେ ଆସି ପାରନ୍ତି ନାହିଁ । ଗଣ୍ଡାର ଚର୍ମ ଏପରି ଶକ୍ତ ଯେ ବର୍ଚ୍ଛା ଝମ୍ପା ଖଣ୍ଡାରେ ହାଣିଲେ ଏହାର କିଛି ହୁଏ

ନାହିଁ । ବଙ୍ଗଦେଶର ଦକ୍ଷିଣ ସୁନ୍ଦରବନ, ହିମାଳୟପର୍ବତର ଜମ୍ମ ପ୍ରଦେଶରେ ଅନେକ ଗଣ୍ଡା ଅଛନ୍ତି । ଅଫ୍ରିକାରେ ଶ୍ୱେତ ଓ କୃଷ୍ଣ ଦୁଇ ଜାତିର ଗଣ୍ଡା ଅଛନ୍ତି । ଏକ ଜାତିର ଗଣ୍ଡାର ନାକ ଉପରେ ଦୁଇ ଏବଂ ଏକ ଜାତିର ଗଣ୍ଡାର ନାକ ଉପରେ ତିନି ଗୋଟି ଖଡ୍ଗ ଥାଏ ।

ତୁମ୍ଭେମାନେ ଓଟ ଦେଖିଅଛ । ଆମ୍ଭେମାନେ ଗୋରୁକୁ ଯେପରି ଉପକାରୀ ଜନ୍ତୁ ବୋଲି ଜ୍ଞାନ କରୁଁ, ଆରବ ଦେଶର ଲୋକେ ଓଟକୁ



ସେହିପରି ଜ୍ଞାନ କରନ୍ତି । ଆରବମାନେ ଓଟ ପିଠିରେ ଚଢ଼ି ମରୁଭୂମିର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ଯାନ୍ତି । ଆରବ-ମାନେ ଓଟର ଦୁଗ୍ଧପାନ, ଓଟ ଚର୍ମରେ ତମ୍ବୁ ଓ ଲୋମରେ ଲୁଗା ପ୍ରସ୍ତୁତ କର-ନ୍ତି । ମୁସଲମାନମାନେ ଓଟ ମାଂସକୁ ଅତ୍ୟନ୍ତ ପବିତ୍ର ଜ୍ଞାନ କରନ୍ତି । ଓଟ ସାତ ଆଠ ଦିନ ଜଳପାନ ନ କରି କିମ୍ବା କିଛି ନ ଖାଇ ରହି ପାରେ । ମଧ୍ୟ-ଆସିଆରେ ଏକ ଜାତିର ଓଟ ଅଛନ୍ତି, ସେମାନଙ୍କ ପିଠି-ରେ ଯୋଡ଼ିଏ କୁଜ ଥାଏ । ଓଟର ପାକସ୍ଥଳରେ ଗୋଟାଏ ଥଳି ଅଛି ତାହା ସର୍ବଦା ଜଳ ପୂର୍ଣ୍ଣ ଥାଏ । ପଥିକମାନେ ମରୁଭୂମିରେ ଯାଉଁ୨ ଯେଉଁ ସ୍ଥାନରେ ଜଳ ନ ପାନ୍ତି, ସେହି ସ୍ଥାନରେ ଗୋଟାଏ ଓଟକୁ ମାରି, ତାହାର ପାକସ୍ଥଳରୁ ଜଳ ନେଇ ପାନ କରନ୍ତି ।



ତୁମ୍ଭେମାନେ ବୋଧହୁଏ ଗୟଲ ଦେଖି ନାହିଁ । ଗୟଲ ମହିଷ ଜାତୀୟ ଅର-ଣ୍ୟ ପଶୁ । ଆଫ୍ରିକା ଏବଂ ଆମେରିକାରେ ଏକ

ଛାଗିର ଅରଣା, ମହିଷ ଅଛନ୍ତି ସେମାନଙ୍କୁ ବାଇସନ କହନ୍ତି । ଏମାନେ ସହସ୍ର ୨ ସଙ୍ଖ୍ୟାରେ ଦଳବଦ୍ଧ ହୋଇ ରହନ୍ତି । ଆମେରିକାବାସୀ କେବଳ ଚର୍ମ ସଂଗ୍ରହ କରିବା ସକାଶେ ପ୍ରତି ବର୍ଷ ବହୁ ସହସ୍ର ବାଇସନ ନିହତ କରନ୍ତି ।



ଭାରତବର୍ଷର ଗୁଜରାଟ ପ୍ରଦେଶରେ, ଆରବ ଏବଂ ପାରଶ୍ୟରେ ସିଂହ ଅଛନ୍ତି । ଆଫ୍ରିକାର ସିଂହ ଯେପରି ବୃହତ୍ ଏବଂ ଦେଖିବାକୁ ସୁନ୍ଦର ହୁଅନ୍ତି, ଆସିଆର ସିଂହ ସେପରି ହୁଅନ୍ତି ନାହିଁ । ସିଂହପରି ସିଂହୀର କେଶର, କିମ୍ବା ଆକାର ବୃହତ୍ ହୁଏ ନାହିଁ । ସିଂହୀର ଏକାବେଳେକେ ତିନି ଚାରି ଗୋଟି ପିଲା ହୁଏ । ସିଂହକୁ ପୋଷିଲେ ପୋଷମାନେ । ସିଂହର ଏପରି ବଳ ଯେ ଗୋଟାଏ ଚାପୁଡ଼ା ମାରିଲେ ବଡ଼ ମହିଷ କିମ୍ବା ଷଣ୍ଢର ମେରୁଦଣ୍ଡ ଭାଙ୍ଗିଯାଏ । ସିଂହ ଗୋରୁ କିମ୍ବା ଘୋଡ଼ାକୁ ମାରି ଦାନ୍ତରେ କାମୁଡ଼ି ଧରି ତିନି କୋଶ ଦୂରକୁ ଘେନି ଯାଇ ପାରେ । ଉପରେ ଦେଖ ସିଂହୀ ଏବଂ ତିନିଗୋଟି ଛୁଆର ଚିତ୍ର ପ୍ରଦତ୍ତ ହୋଇଅଛି ।



ଏହିଠାରେ ଯେଉଁ ଚିତ୍ର ଦେଖୁଅଛ ତାହାର ଗୋଟିଏ ଗଳ୍ପ ଅଛି ଶୁଣ । ପୂର୍ବେ ରୋମ ନଗରର ଜଣେ ଦାସ ଆପଣାର ପ୍ରଭୁଙ୍କ ଘରୁ ପଳାଇ ଗଲା । କୌଣସି ଦାସ ପଳାଇ ଗଲେ ତାହାକୁ ସେହି ସମୟରେ କେହି ଆଶ୍ରୟ ଦେଉ ନ ଥିଲେ । ଦାସ କୌଣସି ସ୍ଥାନରେ ଆଶ୍ରୟ ନ ପାଇ ବନମଧ୍ୟରେ ଏକ ଗୁମ୍ଫାକୁ ଯାଇ ଲୁଚି ରହିଲା । ସେହି ଗୁମ୍ଫା ଗୋଟାଏ ସିଂହର ବୋଲି ତାକୁ ଜଣା ନ ଥିଲା । ଅଳ୍ପକ୍ଷଣ ଉତ୍ତାରୁ ସିଂହ ସେହି ଗୁମ୍ଫାକୁ ଆସିଲା । ସିଂହକୁ ଦେଖି ଭୟରେ ଦାସର କଣ୍ଠ ଓ ତାଳୁ ଶୁଖି ଗଲା । ମାତ୍ର ସିଂହ ତାହାକୁ କିଛି ନ କହି, ତାହା ପାଖକୁ ଯାଇ ଗୋଟାଏ ପାଦ ଦେଖାଇ ଠିଆ ହେଲା । ଦାସ ଦେଖିଲା ସିଂହ ପାଦରେ ଗୋଟାଏ ବଡ଼ କଣ୍ଟା ଫୁଟି ରହିଅଛି ; ଏଣୁ ସିଂହର ଚାଲି-

ତାକୁ କଷ୍ଟ ହେଉଅଛି । ଦାସ ସେହି କଣ୍ଟା କାଢ଼ି ଦେଲାରୁ ସିଂହ ତାହାଠାରେ କେତେ ଆନନ୍ଦ ପ୍ରକାଶ କଲା । ତାହାଉତ୍ତାରୁ ସିଂହ ଶିକାର କରିବାକୁ ଯାଇ ଦାସ ସକାଶେ ଖଣ୍ଡିଏ ମାଂସ ଆଣି ଦେଲା । ସିଂହ ଏହିପରି ପ୍ରତିଦିନ ଦାସକୁ ମାଂସ ଆଣି ଦେଉଥିଲା । ଦାସ ଅନେକ ଦିନ ପର୍ଯ୍ୟନ୍ତ ସିଂହ ସଙ୍ଗେ ସେହି ଗୁମ୍ଫାରେ ରହିଲା । ଦିନେ ବାଣଅ-ମାନେ ଜାଲ ବସାଇ ସିଂହକୁ ଧରି ନେଇ ଗଲେ । ଖାଇବାକୁ ନ ମିଳିବାରୁ ଦାସ ବଣରୁ ବାହାର ଗ୍ରାମକୁ ଅସିଲା କ୍ଷଣି, ଗ୍ରାମାନ୍ତରମାନେ ତାହାକୁ ବନ୍ଦୀ କରି ରାଜାଙ୍କ ପାଖକୁ ନେଇ ଗଲେ । କୌଣସି ପଳା-ତକ ଦାସ ଧୃତ ହେଲେ ତାହାର ପ୍ରାଣଦଣ୍ଡର ବିଧାନ ହେଉଥିଲା । ଏଣୁ ରାଜା ଆଦେଶ ଦେଲେ—"ଏହାକୁ ପଶୁଶାଳାର ଗୋଟିଏ କ୍ଷୁଧିତ ସିଂହକୁ ଦିଅ ।"

ସେହିକ୍ଷଣି ରାଜକର୍ମଚାରୀମାନେ ପଶୁଶାଳାରୁ ଗୋଟିଏ ବୃହତ୍ କ୍ଷୁଧିତ ସିଂହକୁ ପିଞ୍ଜରାରେ ନେଇ ଅସିଲେ, ଏବଂ ପିଞ୍ଜରାଦ୍ୱାର ଫିଟାଇ ଦେଇ ଦାସକୁ ତାହା ମଧ୍ୟକୁ ପୂରାଇ ଦେଲେ । ସିଂହ ଦାସକୁ ଦେଖି ଭୟଙ୍କର ଗର୍ଜନ କରି ତାହା ପାଖକୁ ଡେଇଁ ପଡ଼ିଲା, ମାତ୍ର ପର ମୁହୂର୍ତ୍ତରେ ଆନନ୍ଦସୂଚକ ଶବ୍ଦ କରି ଦାସର ହାତ ଚାଟିଲା । ରାଜା ଏବଂ ଅନ୍ୟାନ୍ୟ ଦର୍ଶକମାନେ ଏହା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ, ଦାସକୁ ତାହାର କାରଣ ପଚାରିବାରୁ, ଦାସ କହିଲା—"ଏହି ସିଂହର ମୁଁ ଉପକାର କରି ଏହା ସଙ୍ଗେ ଅନେକ ଦିନ ଏକ ଗୁମ୍ଫାରେ ଥିଲି । ସିଂହ ପ୍ରଥମ ମୋତେ ନ ଚିହ୍ନି ଖାଇବାକୁ ଅସିଥିଲା, ମାତ୍ର ପଛକୁ ଚିହ୍ନି ପାରି ଆନନ୍ଦ ପ୍ରକାଶ କରୁଅଛି ।"

ରାଜା ଏହା ଶୁଣି ସିଂହକୁ ଏବଂ ଦାସକୁ ଛାଡ଼ି ଦେଲେ । ଦାସ ସେହି ସିଂହ ସଙ୍ଗେ ଅନେକ ଦିନ ରୋମ ନଗରରେ ବାସ କରିଥିଲା ।



ଅସିଆ ବ୍ୟତୀତ ଅନ୍ୟ କୌଣସି ମହାଦେଶରେ ମହାବଳ ବାଘ ନାହାନ୍ତି । ଚିତ୍ରରେ ଦେଖ ଗୋଟାଏ ମହାବଳ ଗୋରୁମାର କେମନ୍ତ ଘେନ ଯାଉଅଛି । ବାଘ କୌଣସି ପଶୁକୁ ଅକ୍ରମଣ କଲା କ୍ଷଣି ତାହାର ତଣ୍ଟି କଣା କରି ରକ୍ତ ପିଏ, ତାହା ଉତ୍ତାରୁ ମଢ଼କୁ ଘେନ ଯାଏ । ବାଘ ଅତ୍ୟନ୍ତ ହିଂସ୍ର ପଶୁ । ଏମାନେ ପୋଷ ମାନନ୍ତି ନାହିଁ । ଏ ପ୍ରଦେଶରେ ସିଂହ ନାହାନ୍ତି । ମହାବଳ ବାଘକୁ ଏ ପ୍ରଦେଶର ପଶୁରାଜ ବୋଲାଯାଇ ପାରେ ।

ତୁମ୍ଭେମାନେ ଭାଲୁ ଦେଖିଅଛ । ଭିନ୍ନ ୨ ଦେଶରେ ଭିନ୍ନ ୨ ଜାତିର ଭାଲୁ ଅଛନ୍ତି । ହିମାଳୟରେ ଧୂସର ବର୍ଣ୍ଣର ଭାଲୁ ଅଛନ୍ତି । ଏମାନଙ୍କ ଆକୃତି ବୃହତ୍ ହୁଏ । କଳା ଭାଲୁ ଗଛରେ ଚଢ଼ି ପାରେ । ଏକ ସାହେବ ପାଞ୍ଚଜଣ ମନୁଷ୍ୟ ଘେନ ଏକ ବନମଧ୍ୟରେ ଯାଉଥିବାବେଳେ ତାଙ୍କର ଖାନସାମାକୁ ଗୋଟାଏ ଭାଲୁ ଗୋଡ଼ାଇଲା । ସାହେବ ତାହା ଦେଖି ଭାଲୁକୁ ଗୁଳି ମାରିବାକୁ ଉଦ୍ୟତ ହେଲେ । ତାହା ଦେଖି ଖାନସାମା ସାହେବଙ୍କୁ କହିଲା,—"ଆପଣ ଗୁଳି ମାରିବେ ନାହିଁ, ମୁଁ ଏହାକୁ ଘେନ ଉପର କୌତୁକ କରିବ ଦେଖନ୍ତୁ ।" ଏହା କହି ଖାନସାମା ଦୁଇଖଣ୍ଡ ବଡ଼ ଦଉଡ଼ି ଘେନ, ଭାଲୁକୁ ଗୋଟାଏ ଟେକାମାରି ଉତ୍ତେ-



ଜିଦ କରି, ଗୋଟାଏ ଗଛ ଉପରକୁ ଉଠି ଗଲା । ଭାଲୁ ମଧ୍ୟ ତାହାକୁ ମାରିବା ସକାଶେ ତାହା ପଛେ ପଛେ ଗଛରେ ଚଢ଼ିଲା । ଖାନସାମା ଗୋଟାଏ ଡାଳର ଅଗରେ ଦଉଡ଼ି ବାନ୍ଧି ସଙ୍ଗୀମାନଙ୍କୁ କହିଲା— "ଜୋରରେ ଓଟାର ନେଇ ଆଉ ଗୋଟିଏ ଗଛରେ ବାନ୍ଧି ଦିଅ ।" ଭାଲୁ ସେହି ଡାଳକୁ ଗଲା କ୍ଷଣି, ଖାନସାମା ଆଉ ଖଣ୍ଡିଏ ଦଉଡ଼ି ଡାଳରେ ବାନ୍ଧି ତଳକୁ ଖସି ଆସି, ଓଟାର ବନ୍ଧା ହୋଇଥିବା ଦଉଡ଼ି କାଟି ଦେଲା । କାଟି ଦେଲାକ୍ଷଣି, ଡାଳ ହଠାତ୍ ଉପରକୁ ଉଠିଯିବାରୁ, ଭାଲୁ ଶୂନ୍ୟକୁ ଉଠି ଯାଇ, ଅତି ବେଗରେ ତଳେ ପଡ଼ି ମରି ଗଲା ।

ଶୀତପ୍ରଧାନ ଦେଶରେ ଧଳା ଭାଲୁ ଅଛନ୍ତି । ଏମାନଙ୍କ ପାଦର ନିମ୍ନଭାଗ ଲୋମାବୃତ ବୋଲି ଏମାନେ ବରଫ ଉପରେ ଅନାୟାସରେ ଯାଇ ଆସି ପାରନ୍ତି । ଏମାନେ ଅତି ଦ୍ରୁତବେଗରେ ପହଁରି ପାରନ୍ତି, ଏବଂ ପାଣିରେ ବୁଡ଼ି ଶିକାର କରନ୍ତି । ବଲ୍ଲାହରଣ, ଝିଲଝିଲୁ, ସିନ୍ଧୁ-



ଘୋଟକ ପ୍ରଭୃତି ଏମାନଙ୍କର ପ୍ରଧାନ ଖାଦ୍ୟ । ଚିତ୍ରରେ ଦେଖ ଗୋଟାଏ ଧଳା ଭାଲୁ ଗୋଟାଏ ସିନ୍ଧୁଘୋଟକକୁ କେମନ୍ତ କୁଣ୍ଢାଇ ଧରି ଅଛି । ସୁବିଧା ପାଇଲେ ଏମାନେ ମନୁଷ୍ୟକୁ ମଧ୍ୟ ମାରି ଖାନ୍ତି । ଯେଉଁ ଭାଲୁ ଥରେ ମନୁଷ୍ୟ ମାଂସର ସ୍ୱାଦ ପାଏ ସେ ସବୁବେଳେ ମନୁଷ୍ୟ ମାରିବାକୁ ଚେଷ୍ଟା କରେ ।

ଆମେରିକାରେ ଗ୍ରିଜ୍‌ଲି ବୋଲି ଏକ ଜାତିର ଭାଲୁ ଅଛନ୍ତି ସେମାନଙ୍କ ଆକୃତି ଯେପରି ବୃହତ୍ ସ୍ୱଭାବ ମଧ୍ୟ ସେହିପରି ଭୟଙ୍କର । ଏହି ଜାତିସ୍ ଗୋଟାଏ ୨ ଭାଲୁ ଓଜନରେ ଦଶ ବାର ମହଣ ପର୍ଯ୍ୟନ୍ତ ହୁଅନ୍ତି ।

ତୁମ୍ଭେମାନେ ଜିରାଫ ଦେଖି ନାହଁ, କଲିକତାକୁ ଗଲେ ପଶୁଶାଳାରେ ଦେଖି ପାରିବ । ଜିରାଫର ସମ୍ମୁଖଭାଗ ଉଚ୍ଚରେ ଏଗାର ଛ ବାର ହାତ ଏବଂ ପଶ୍ଚାଦ୍‌ଭାଗ ଛଅ ସାତ ହାତ ହୁଏ । ଜିରାଫ ଆଫ୍ରିକା ମହାଦେଶର ଜନ୍ତୁ । ଏମାନେ ଦଳବଦ୍ଧ ହୋଇ ରହନ୍ତି । ହରିଣ ଲମ୍ବା ଗୋରୁ ପରି ଜିରାଫ ଭୂମିର ତୃଣାଦି ଖାଇ ପାରେ ନାହିଁ । ଗୋରୁ ପ୍ରଭୃତିଙ୍କ ପରି ଏମାନଙ୍କ ବେକ ତଳକୁ ନତ ହୁଏ ନାହିଁ । ଏମାନେ ଜଳ ପିଇଲାବେଳେ ନଦୀ ପ୍ରଭୃତିକୁ ଯାଇ, ସମ୍ମୁଖର ଦୁଇ

ଗୋଡ଼କୁ ଫାଙ୍କ କରି ଏବଂ ବେକକୁ ନୁଆଁଇ ପରେ ନତ କରି ଜଳ ପାନ କରନ୍ତି । ଏମାନେ ବୃକ୍ଷପତ୍ର ଏବଂ କୋମଳ ଶାଖାଦି ଖାଇ ପ୍ରାଣଧାରଣ କରନ୍ତି । ହାତୀ ଶୁଣ୍ଢଦ୍ୱାରା ଯେପରି ବୃକ୍ଷର ଶାଖା ଓ ପତ୍ରାଦି ଆଣି ଖାଏ, ଜିରାଫ ସେହିପରି ଆପଣାର ଜିହ୍ୱାଦ୍ୱାରା ବୃକ୍ଷପତ୍ରାଦି ଚିଡ଼ାଇ ଆଣି ଖାଏ । କୌଣସି ପଶୁ ଜିରାଫକୁ ଆକ୍ରମଣ କଲେ, ଜିରାଫ ପଛ ଗୋଡ଼ରେ ଏପରି ଆଘାତ କରେ ଯେ ଆକ୍ରମଣକାରୀ ଅସ୍ଥିର ହୋଇ



ପଳାଇ ଯାଏ । ମାତ୍ର ସିଂହ ଜିରାଫ ପାଖ-କୁ ଗଲାକ୍ଷଣି, ତାହାର ପିଠି ଉପରକୁ ଡେଇଁ ପଡ଼େ ଏବଂ ତାହା ଦେହରେ ନଖ ଦାନ୍ତ ଦେଇ ବେକକୁ କାମୁଡ଼ି ଧରେ । ଜିରାଫର ଦେହର ଚର୍ମ ଅତ୍ୟନ୍ତ ମୋଟ ବୋଲି ସିଂହର ନଖ ଓ ଦାନ୍ତ ଦ୍ୱାରା ଅଧିକ ଅନିଷ୍ଟ ହୁଏ ନାହିଁ । ସିଂହ ପିଠି ଉପରକୁ ଡେଇଁ ପଡ଼ିଲା-କ୍ଷଣି ଜିରାଫ ଭୟରେ ଅସ୍ଥିର ହୋଇ ଅତ୍ୟନ୍ତ ବେଗରେ ଦଉଡ଼ି ଯାଏ । ଜି-ରାଫ ସିଂହକୁ ପିଠିରେ ଘେନି କିଛି ଦୂର-ଗଲେ, ସିଂହର ବଳ ଓ ଭାର ହେତୁ ଜିରାଫର ପାଦ ଓ ବେକର ଶକ୍ତିମାନ ଖସିଯାଏ । ତହିଁ ଉତ୍ତାରୁ ଜିରାଫ ଭୂମିରେ ପଡ଼ି ସିଂହର ଭକ୍ଷ୍ୟ ହୁଏ ।

ଲୀଳାବତୀ—ଅପା, ଆଉ କେଉଁ ପଶୁର ବଳ ଅଧିକ ?

ଅପା—ପଶ୍ଚିମଆଫ୍ରିକାରେ ଗରିଲା ବୋଲି ବାନର ଜାତୀୟ ଯେଉଁ ପଶୁଅଛନ୍ତି ସେମାନଙ୍କ ପରାକ୍ରମ ସିଂହଠାରୁ ଊଣା ନୁହେ । କେହି କେହି ଏମାନଙ୍କୁ ବନମନୁଷ୍ୟ ବୋଲି କହନ୍ତି । ଏମାନେ ମନୁଷ୍ୟ ପରି ଦୁଇ



ପାଦରେ ଚାଲି ପାରନ୍ତି । ଗରିଲାମାନେ ବୃଷ୍ଟିକାଳରେ ବୃକ୍ଷଶାଖାରେ ବୃକ୍ଷପତ୍ର ଲତା ପ୍ରଭୃତିଦ୍ୱାରା ଗୃହ ନିର୍ମାଣ କରି ବାସ କରନ୍ତି । ଅନ୍ୟ କୌଣସି ପଶୁ ଗୃହ ନିର୍ମାଣ କରି ବାସ କରନ୍ତି ନାହିଁ । ଗରିଲା ଆଦର୍ଶ ପିତା ଏବଂ ଆଦର୍ଶ ସ୍ୱାମୀ । ସ୍ତ୍ରୀଗରିଲା କିମ୍ବା ଗରିଲାଶିଶୁ ବିପଦରେ ପତିତ ହେଲେ ପୁଂଗରିଲା ଆପଣାର ପ୍ରାଣ ଦେଇ ସେମାନଙ୍କ ରକ୍ଷା କରେ । ଏମାନଙ୍କର ଏପରି ବଳ ଯେ ଥରେ ଗୋଟାଏ ଗରିଲା ଗୋଟାଏ ବନ୍ଧୁକର ନଳକୁ ଦୁଇ ହାତରେ ଧରି କାଣ୍ଡ ପରି ନୁଆଁଇ ଦେଇଥିଲା । ଭଲ ଶିକାରୀ ନ ହେଲେ ଗରିଲା ଶିକାର କରି ପାରନ୍ତି ନାହିଁ । ଶିକାରର ପ୍ରଥମ ଗୁଳି ବ୍ୟର୍ଥ ହେଲେ, ପରମୁହୂର୍ତ୍ତରେ ଗରିଲା ଘୋର ବିକଟ ଶବ୍ଦକରୁଁ, ବିଦ୍ୟୁତ ବେଗରେ ଆସି, ଏକ ମୁଷ୍ଟାଘାତରେ

ଶିକାରର ପ୍ରାଣନାଶ କରେ । ଏମାନେ ଯେଉଁ ବନରେ ରହନ୍ତି, ଏମାନଙ୍କ ଭୟରେ ସେହି ବନରେ ହାତୀ, ଗଣ୍ଡା ପ୍ରଭୃତି ପରାକ୍ରମୀ ପଶୁମାନେ ରହି ପାରନ୍ତି ନାହିଁ । ଏମାନେ କେବେହେଁ ପୋଷ ମାନନ୍ତି ନାହିଁ । ଚିତ୍ର-ରେ ଦେଖ ଗୋଟିଏ ଗରିଲା ଏକ ହାତରେ ବାଘର ବେକ ଏବଂ ଅନ୍ୟ ହାତରେ ବାଘର ଗୋଟାଏ ଗୋଡ଼କୁ ଧରି କେମନ୍ତ ଅକ୍ଳେଶରେ ମାରୁଅଛି ।



ଆଜି ରାତି ହେଲାଣି, ଆଉ ଗୋଟିଏ ଆଶ୍ଚର୍ଯ୍ୟ ପଶୁର କଥା କହି କଥା ଶେଷ କରିବ । ଅଷ୍ଟ୍ରେଲିଆରେ ଏକଜାତୀୟ ପଶୁ ଅଛନ୍ତି ସେମାନଙ୍କୁ ଦ୍ୱିଗର୍ଭପଶୁ କହନ୍ତି । ଏମାନଙ୍କ ସନ୍ତାନ ଜନ୍ମ ହୋଇ, ଦ୍ୱିତୀୟ-ଗର୍ଭରେ ରହି ପାଳିତ ହୁଏ । ଦ୍ୱିଗର୍ଭ ପଶୁମାନଙ୍କ ମଧ୍ୟରେ କଙ୍ଗାରୁ



ଅଙ୍କୃତିରେ ସର୍ବା-
ପେକ୍ଷା ବୃହତ୍ତମ
ଅଟେ । ଗୋଟିଏ
କଙ୍ଗାରୁ ହୁଅ ତା-
ହାର ମାତାର
ଦ୍ୱିଙ୍କସ୍ଥ ଗର୍ଭରୁ
ମୁଣ୍ଡ ଓ ଗୋଡ଼
କାଢ଼ି ରହିଥିବାର
ଚିତ୍ର ଏଠାରେ
ପ୍ରଦତ୍ତ ହୋଇଅଛୁ ଦେଖ । ଅଚ୍ଛା, ତୁମ୍ଭେମାନେ କହିଲ, ପଶୁମାନଙ୍କ ମଧ୍ୟରେ ସର୍ବାପେକ୍ଷା ବୃହତ୍ତମ ଏବଂ ସର୍ବାପେକ୍ଷା କ୍ଷୁଦ୍ରତମ କିଏ ?

ପଦ୍ମାବତୀ—ପଶୁମାନଙ୍କ ମଧ୍ୟରେ ହାତୀ ସର୍ବାପେକ୍ଷା ବୃହତ୍ତମ ଏବଂ ମୂଷା ସର୍ବାପେକ୍ଷା କ୍ଷୁଦ୍ରତମ ଅଟେ ।

ଅଣ୍ଣ—ମୂଷା କ୍ଷୁଦ୍ରତମ ପଶୁ ହେଲେହେଁ ଏମାନଙ୍କ ବୁଦ୍ଧି ସାମାନ୍ୟ ନୁହଇ । କିମ୍ନଚିତ୍ରରେ ଦେଖ, ଏମାନେ ବୁଦ୍ଧିବଳରେ ଅଣ୍ଡା ଚୋରି କରି ଗାଡ଼ ଭିତରକୁ କେମନ୍ତ ଘେନି ଯାଉଅଛନ୍ତି । ଚାଲ ଆଜି ଗତି ହେଲାଣି ।



## ସପ୍ତମ ସନ୍ଧ୍ୟା ।

## ଶୈବ୍ୟା ।

---

ପଦ୍ମାବତୀ—ଅଈ, ଅଜି କହୁ କହ ।

ଅଈ—ଅଜି ତୁମ୍ଭମାନଙ୍କୁ ଶୈବ୍ୟାଙ୍କ କଥା କହିବ ।

କଷାମଣି—ହଉ, ଅଈ କହ ତେବେ ।

ଅଈ—ମୁଁ ଏହି ପୋଥିରେ ଶୈବ୍ୟାଙ୍କ କଥା ଲେଖି ରଖିଥିଲି । ପଢୁଅଛୁ ଶୁଣ । "ଶୈବ୍ୟା ଅଯୋଧ୍ୟାର ନରପତି ଦାନବୀର ହରିଶ୍ଚନ୍ଦ୍ରଙ୍କ ମହିଷୀ ଥିଲେ । କୁଟବୁଦ୍ଧିମୁନି ବିଶ୍ୱାମିତ୍ରଙ୍କ ସଙ୍ଗେ ହରିଶ୍ଚନ୍ଦ୍ରଙ୍କ କୌଣସି କାରଣରୁ ମନାନ୍ତର ଉପସ୍ଥିତ ହୋଇଥିଲା । ବିଶ୍ୱାମିତ୍ର ହରିଶ୍ଚନ୍ଦ୍ରଙ୍କୁ ଲଜ୍ଜିତ କରିବା ଉଦ୍ଦେଶ୍ୟରେ ଦିନେ ତାହାଙ୍କ ରାଜସଭାକୁ ଆସି କହିଲେ—'ମହାରାଜ, ଆପଣଙ୍କୁ ସମସ୍ତେ ଦାନବୀର କହନ୍ତି, ଆପଣଙ୍କୁ ଯେ ଯାହା ପ୍ରାର୍ଥନା କରେ ଆପଣ ତାହାକୁ ତାହା ଦିଅନ୍ତି । ମୁଁ ଆପଣଙ୍କୁ କିଛି ପ୍ରାର୍ଥନା କରିବାକୁ ଆସିଅଛୁ । ଆପଣ ସତ୍ୟପାଳନ କରିବାକୁ ପ୍ରତିଶ୍ରୁତ ହେଲେ ପ୍ରାର୍ଥନା କରିବ ।

ହରିଶ୍ଚନ୍ଦ୍ର—ମୁଁ ସତ୍ୟପ୍ରତିଜ୍ଞ ହୋଇ କହୁଅଛୁ, ଆପଣ ରାଜ୍ୟ ଧନ ଯାହା ପ୍ରାର୍ଥନା କରିବେ ତାହା ଦେବ । ଆପଣ କହିଲେ ଏହି ପ୍ରାଣ ଦେଇ ସୁଦ୍ଧା ଆପଣଙ୍କର ତୁଷ୍ଟିସାଧନ କରିବ ।

ବିଶ୍ୱାମିତ୍ର—ମହାରାଜ ପ୍ରତିଜ୍ଞାବଦ୍ଧ ହେଲେ ସତ୍ୟ, ମାତ୍ର ପଛକୁ ଅନୁତାପ ନ କଲେ ହୁଏ ।

ହରି—ମୁଁ ସତ୍ୟ କରି କହୁଅଛୁ ମୋର ବାକ୍ୟ ଅନ୍ୟଥା ହେବ

ନାହିଁ । ସେଥିସକାଶେ ମୋର ପ୍ରାଣ କିମ୍ବା ପ୍ରିୟତମା ପତ୍ନୀଙ୍କୁ ତ୍ୟାଗ କରିବାକୁ ହେଲେ ସୁଦ୍ଧା ଲବେମାତ୍ର ଦୁଃଖିତ ହେବି ନାହିଁ ।

ବିଶ୍ୱା—ଅହେ ସଭାସଦ୍‌ବର୍ଗ ତୁମ୍ଭେମାନେ ସାକ୍ଷୀ, ମୁଁ ଯାହା ପ୍ରାର୍ଥନା କରିବି ରାଜା ମୋତେ ତାହା ଦେବେ । ମହାରାଜ, ମୁଁ ଆପଣଙ୍କୁ ଧନରତ୍ନ ସହ ଆପଣଙ୍କର ଏହି ରାଜ୍ୟ ପ୍ରାର୍ଥନା କରୁଅଛି, ମୋତେ ତାହା ଦାନ କରି ସ୍ୱୀୟ ଅଙ୍ଗୀକାର ପାଳନ କରନ୍ତୁ ।

ହରି—(ସହର୍ଷବଦନରେ) ଏହି ମୁହୂର୍ତ୍ତରୁ ଏହି ରାଜ୍ୟ ଏବଂ ରାଜ୍ୟସ୍ଥ ଧନରତ୍ନ ଓ ପ୍ରଜାଦି ଆପଣଙ୍କର ହେଲା । ଏଥିରେ ମୋର କିମ୍ବା ମୋର ଉତ୍ତରାଧିକାରମାନଙ୍କର ଆଜିଠାରୁ କୌଣସି ସ୍ୱତ୍ୱ କିମ୍ବା ସମ୍ବନ୍ଧ ରହିଲା ନାହିଁ ।

ବିଶ୍ୱା—ମହାରାଜ ଦାନ କରି ଦାନର ଉପଯୁକ୍ତ ଦକ୍ଷିଣା ନ ଦେଲେ ଦାନ ନିଷ୍ଫଳ ହୁଏ ।

ହରି—କୋଷାଧ୍ୟକ୍ଷ, ମୁନିବରଙ୍କୁ ସପ୍ତକୋଟି ସୁବର୍ଣ୍ଣ ଦିଅ ।

ବିଶ୍ୱା—ମହାରାଜ, ଦାନ କରି, ପୁଣି ତାହା ଗ୍ରହଣ କଲେ ମହାପାପ ହୁଏ । ଆପଣ ମୋତେ ଧନରତ୍ନାଦି ସହ ଏହି ରାଜ୍ୟ ଦାନ କରିଅଛନ୍ତି । ଏହି ରାଜ୍ୟ ଏବଂ ରାଜଭଣ୍ଡାର ବର୍ତ୍ତମାନ ମୋର । ମୁଁ ଆଦେଶ କରୁଅଛି, ଆପଣ ମୋର ରାଜ୍ୟ ତ୍ୟାଗକରି ରାଜ୍ୟାନ୍ତରକୁ ଯାଇ ବାସ କରନ୍ତୁ । ଆପଣ ଦକ୍ଷିଣା ଦେବାକୁ ପ୍ରତିଶ୍ରୁତ ହୋଇ, ମୋତେ ପ୍ରତାରଣା କଲେ ମୁଁ ଆପଣଙ୍କୁ ଅଭିଶାପ ଦେବି ।

ହରି—( କରଯୋଡ଼ରେ ) ମୁଁ ଏହି ମୁହୂର୍ତ୍ତରେ ଏହି ରାଜ୍ୟ ତ୍ୟାଗକରି, ସ୍ତ୍ରୀପୁତ୍ରସହ ବାରାଣସୀକୁ ଯାଇ ବାସ କରିବି । ଆଜିଠାରୁ ସପ୍ତାହ ମଧ୍ୟରେ ଆପଣଙ୍କର ଦକ୍ଷିଣା ଦେବି । କୃପା କରି ମୋତେ ଏହି ସମୟ ଦେଉନ୍ତୁ ।

ବଶ୍ୟା—ହେଉ, ସନ୍ଧ୍ୟା ପରେ ପୁଣି ସାକ୍ଷାତ୍ କରିବ । (ପ୍ରସ୍ଥାନ)

( ହରିଶ୍ଚନ୍ଦ୍ରଙ୍କ ଅନ୍ତଃପୁର ପ୍ରବେଶ )

ଶୈବ୍ୟା—( ସହର୍ଷରେ ) ମହାରାଜ, ମନ୍ତ୍ରୀଙ୍କ ମୁଖରୁ ମୁଁ ସବୁ ଶୁଣିଅଛୁ । ଅପଣ ଆଜି ରାଜ୍ୟପାଳନ କରି ବଶ୍ୟାମିତ୍ରଙ୍କୁ ତୁଷ୍ଟ କରିଅଛନ୍ତି । ଆଜି ଅମ୍ଭମାନଙ୍କର ଶୁଭଦିନ ।

ହରି—କାଲି ତୁମ୍ଭେ ରାଜରାଜେଶ୍ୱରୀ ଥିଲ ଆଜି ଦରିଦ୍ରର ସ୍ତ୍ରୀ ହେଲ । ମୁଁ ମନେ କରିଥିଲି ହଠାତ୍ ଏହିପରି ରାଜ୍ୟ ପରିବର୍ତ୍ତନ ହେବାରୁ ତୁମ୍ଭ ମନରେ ବଡ଼ ଦୁଃଖ ହୋଇଥିବ । ଏହି ଦୁର୍ଲ୍ଲଭ ରାଜସୁଖ, ଧନ, ମାନ, ରାଜପ୍ରାସାଦ ସବୁ ଛାଡ଼ି ଯିବାକୁ ହେବ ଏଥିରେ କି ତୁମ୍ଭର ଦୁଃଖ ହେଉ ନାହିଁ ?

ଶୈବ୍ୟା—ମହାରାଜ, ଏହି ଦୁର୍ଲ୍ଲଭ ରାଜଭୋଗ, ରାଜମାନ, ରାଜପ୍ରାସାଦରେ ମୋର ସୁଖ ନାହିଁ । ମୋର ସୁଖ ଅପଣଙ୍କଠାରେ । ଅପଣ ସସାଗରା ଧରାର ଅଧୀଶ୍ୱର ହେଉନ୍ତୁ ଅବା ଦରିଦ୍ର ଭିକ୍ଷୁକ ହେଉନ୍ତୁ, ଆପଣ ରାଜପ୍ରାସାଦରେ ବାସ କରନ୍ତୁ କମ୍ବା ନିର୍ଜ୍ଜନ ଅରଣ୍ୟରେ ବାସ କରନ୍ତୁ, ମୁଁ ଅପଣଙ୍କର ସେବା କଲେ ସୁଖୀ ହେବ । ଅପଣଙ୍କ ସୁଖରେ ମୋର ସୁଖ ଅପଣଙ୍କ ଦୁଃଖରେ ମୋର ଦୁଃଖ ।

ହରି—ତୁମ୍ଭପରି ସ୍ତ୍ରୀ ଯାହାର ଅଛି, ତାହାପରି ଭାଗ୍ୟବାନ୍ ଅଉ କିଏ ? ଚାଲ ଏହିକ୍ଷଣି ଏହି ରାଜ୍ୟ ଛାଡ଼ି ଯିବାକୁ ହେବ ।

( ପୁତ୍ର ରୋହିତାଶ୍ୱ ଓ ଭାର୍ଯ୍ୟା ଶୈବ୍ୟାଙ୍କୁ ଘେନି ହରିଶ୍ଚନ୍ଦ୍ର ବାରାଣସୀକୁ ପ୍ରସ୍ଥାନ କଲେ )



( ବାରାଣସୀ । )

ଶୈବ୍ୟା—ମହାରାଜ, ଆଜି ସୂର୍ଯ୍ୟାସ୍ତ ହେଲେ ଦକ୍ଷିଣା ଦେବାର ସତ୍ୟାହ ଅତୀତ ହେବ । ମତେ କିଛୁ ଉପାୟ ଦିଶୁ ନାହିଁ ।

ହର—ଜଗଦୀଶ୍ୱର ମତେ ଏହି ବିପଦରୁ ଉଦ୍ଧାର କରିବେ । ତାହାଙ୍କ ବ୍ୟତୀତ ମୋର ଅନ୍ୟ ଉପାୟ ନାହିଁ । ଏହି ଦେଖ ବିଶ୍ୱାମିତ୍ର ଆସୁଅଛନ୍ତି ।

ବିଶ୍ୱା—ମହାରାଜ, ଆଜି ସତ୍ୟାହ ପୂର୍ଣ୍ଣ ହେଲା, ମୋର ଦକ୍ଷିଣା ଦେଉନ୍ତୁ ।

ହର—ମହାଭାଗ, ଆଜି ସୂର୍ଯ୍ୟାସ୍ତ ହେଲେ ସତ୍ୟାହ ପୂର୍ଣ୍ଣ ହେବ ।

ବିଶ୍ୱା—ମିଥ୍ୟାବାଦୀ ହରିଶ୍ଚନ୍ଦ୍ର । ଅଉ ମିଛରେ କାହିଁକି ପ୍ରତାରଣା କରୁଅଛ ? ସାତ ଦିନରେ ଯାହା ହୋଇ ନାହିଁ, ତାହା ଆଜି ଦିନମାନରେ କିପରି ହେବ ? ବର୍ତ୍ତମାନ ମୁଁ ଯାଉଅଛି, ସୂର୍ଯ୍ୟାସ୍ତ ପୂର୍ବେ ଆସିବି । ସୂର୍ଯ୍ୟାସ୍ତ ପୂର୍ବେ ଦକ୍ଷିଣା ନ ଦେଲେ ଅଭିଶାପ ଦେବି ।

( ଏହା କହି ବିଶ୍ୱାମିତ୍ର ପ୍ରସ୍ଥାନ କଲେ )

ସ୍ୱାମିଙ୍କୁ ଏହିପରି ନିଗୃହୀତ ହେବାର ଦେଖି ପତିପରାୟଣା ଶୈବ୍ୟା ଦାରୁଣ ମର୍ମ୍ମପୀଡ଼ିତା ହେଲେହେଁ ଅଧୀରା ଅବା କର୍ତ୍ତବ୍ୟ ନିର୍ଦ୍ଧାରଣରୁ ବିରତା ହେଲେ ନାହିଁ । ଶୈବ୍ୟା ପତିଙ୍କ ବିପଦ ଉଦ୍ଧାରର ଉପାୟ ଉଦ୍ଭାବନ କରି କହିଲେ—'ମହାରାଜ, ତନ୍ତ୍ରା ତ୍ୟାଗକରି ସତ୍ୟପାଳନ କରନ୍ତୁ । ଯେ ସତ୍ୟ ଲଙ୍ଘନ କରେ ତାହାକୁ ସମସ୍ତେ ତ୍ୟାଗ କରନ୍ତି । ମିଥ୍ୟାବାଦୀ ପୁରୁଷର ଦାନ ଧର୍ମ୍ମାଦି ସବୁ ବିଫଳ ହୁଏ । ସତ୍ୟପାଳନର ଉପାୟ ଥାଉଁ, ଆପଣ କାହିଁକି ଏତେ ନିଗ୍ରହ ଓ ଅପମାନ ସହ୍ୟ କରୁଅଛନ୍ତି ?'

ହର—ପ୍ରିୟେ, ଦୈବ ମତେ ପ୍ରତିକୂଳ, ମୁଁ ଏହି ଘୋର ସଙ୍କଟରୁ

ଉଦ୍ଧାର ହେବାର କୌଣସି ଉପାୟ ଦେଖୁ ନାହିଁ । ଉପାୟ ଥିଲେ ମୁଁ କାହିଁକି ଏତେ ଯନ୍ତ୍ରଣା ସହ୍ୟ କରିବି ?

ଶୈବ୍ୟା—( ସଜଳନୟନ ଓ ଗଦ୍ଗଦକଣ୍ଠରେ ) ମହାରାଜ, ଲୋକେ ପୁତ୍ରସକାଶେ ଦାରଗ୍ରହଣ କରନ୍ତି । ମୋର ପୁତ୍ର ଜନ୍ମିଅଛି, ଏଣୁ ବିବାହର ଉଦ୍ଦେଶ୍ୟ ସଫଳ ହୋଇଅଛି । ମତେ ବିକ୍ରୟ କରି, ସେହି ମୂଲ୍ୟ ବିଶ୍ୱାମିତ୍ରଙ୍କୁ ଦେଇ ସତ୍ୟପାଳନ କରନ୍ତୁ ।

ରାଜାଧିରାଜ ହରିଶ୍ଚନ୍ଦ୍ର ଧନ, ମାନ, ଖ୍ୟାତି, ସୌଭାଗ୍ୟ ଓ ସୁବିସ୍ତୃତ ସାମ୍ରାଜ୍ୟ, ସମସ୍ତରୁ ବଞ୍ଚିତ ହୋଇ କାତର ହୋଇ ନ ଥିଲେ । ରାଜରାଜେଶ୍ୱର ହୋଇ ହୀନତମ ଭିକ୍ଷୁକଦଶାରେ ପତିତ ହେଲେହେଁ କଷ୍ଟାନୁଭବ କରି ନ ଥିଲେ । ମାତ୍ର ଶୈବ୍ୟାଙ୍କ ଶେଷୋକ୍ତ ବାକ୍ୟ ଶ୍ରବଣ କରି ସେ ଶୋକରେ ଅଭିଭୂତ ହୋଇ ପଡ଼ିଲେ । ସମ୍ପଦର ଆନନ୍ଦ, ବିପଦର ବନ୍ଧୁ, ପ୍ରାଣାଧିକା ଶୈବ୍ୟାଙ୍କୁ ବିକ୍ରୟ କରି ଅର୍ଥ-ସଂଗ୍ରହ କରିବାକୁ ହେବ, ରକ୍ଷକ ଓ ପ୍ରତିପାଳକ ସ୍ୱାମୀ ହୋଇ ପତ୍ନୀଙ୍କୁ ପରହସ୍ତରେ ଅର୍ପଣ କରିବାକୁ ହେବ; ରାଜରାଜେଶ୍ୱରୀଙ୍କୁ ପରର ଦାସୀତ୍ୱରେ ନିଯୁକ୍ତ କରିବାକୁ ହେବ, ଚିନ୍ତା କରି ମୂର୍ଚ୍ଛିତ ହୋଇ ପଡ଼ିଲେ । ତଦନନ୍ତର ଚେତନା ଲାଭ କରି ସ୍ତ୍ରୀପୁତ୍ର ନିମନ୍ତେ ବହୁ ବିଳାପ କଲେ ।

ଦିବା ତୃତୀୟପ୍ରହର ଉତ୍ତାରୁ ବିଶ୍ୱାମିତ୍ର ହରିଶ୍ଚନ୍ଦ୍ରଙ୍କ ନିକଟରେ ଉପସ୍ଥିତ ହୋଇ ଦକ୍ଷିଣା ପ୍ରାର୍ଥନା କରି ତାହାଙ୍କୁ ବାରମ୍ବାର ଭର୍ତ୍ସନା କଲେ । ହରିଶ୍ଚନ୍ଦ୍ରଙ୍କ ଆର୍ତ୍ତନାଦ, ଶୈବ୍ୟାଙ୍କ ସକରୁଣ ବିଳାପ, ବାଳକ ରୋହିତାଶ୍ୱର କାତରତା, ବିଶ୍ୱାମିତ୍ରଙ୍କ ଦୃଢ଼ସଙ୍କଳ୍ପରୁ ତିଳମାତ୍ର ବିଚଳିତ କରି ପାରନ୍ତା ନାହିଁ । ଏଥିରେ ଶୈବ୍ୟା ଅତ୍ୟନ୍ତ ବ୍ୟଥିତା ଏବଂ ଉଦ୍‌ବେଜିତା ହେଲେ । ସେ ହରିଶ୍ଚନ୍ଦ୍ରଙ୍କ ପାଦତଳେ ପତିତା ହୋଇ

କହିଲେ—'ମହାରାଜ, ତୁଚ୍ଛ ସ୍ତ୍ରୀପୁତ୍ରର ସ୍ନେହମମତାରେ ଆପଣ ସତ୍ୟ-ଭ୍ରଷ୍ଟ ହେବେ ଏହା ମନେ କରି ମୋର ହୃଦୟ ବିଦୀର୍ଣ୍ଣ ହୋଇ ଯାଉ-ଅଛି; ଆପଣ ମତେ ବିକ୍ରୟ କରି ସତ୍ୟପାଳନ କରନ୍ତୁ ।

ବିଶ୍ୱାମିତ୍ରଙ୍କ ଭର୍ତ୍ସନା ଏବଂ ଶୈବ୍ୟାଙ୍କ ପୁନଃ୨ ଉତ୍ତେଜନାରେ ହରିଶ୍ଚନ୍ଦ୍ର ପତ୍ନୀ-ପ୍ରସ୍ତାବିତ ଦାରୁଣକାର୍ଯ୍ୟରେ ଅଗତ୍ୟା ପ୍ରବୃତ୍ତ ହେଲେ । ହରିଶ୍ଚନ୍ଦ୍ର ହାଟକୁ ଯାଇ ଶୈବ୍ୟାଙ୍କୁ ଏକ ବ୍ରାହ୍ମଣଙ୍କୁ ବିକ୍ରୟ କଲେ । ବ୍ରାହ୍ମଣ ଚାରିକୋଟି ସ୍ୱର୍ଣ୍ଣମୁଦ୍ରା ଦେଇ ଶୈବ୍ୟାଙ୍କୁ ଦାସୀରୂପରେ କ୍ରୟ କରି ଘେନି ଯିବାବେଳେ, ବାଳକ ରୋହିତାଶ୍ୱ ମାତାଙ୍କ ଅନୁଗମନରେ ପ୍ରବୃତ୍ତ ହେବାରୁ, ବ୍ରାହ୍ମଣ ଶୈବ୍ୟାଙ୍କୁ କହିଲେ—'ମୋର ଜଣେ ଦାସୀର ଆବଶ୍ୟକ ଥିଲା, ଏଣୁ ତୁମ୍ଭଙ୍କୁ କ୍ରୟ କଲି, ତୁମ୍ଭର ପୁତ୍ରକୁ ନେବାର ଆବଶ୍ୟକ ନାହିଁ, ମୁଁ ଜଣକୁ ଛଣି ଦୁଇ ଜଣଙ୍କୁ ଖାଇବାକୁ ଦେଇ ପାରିବି ନାହିଁ ।'

'ଶୈବ୍ୟା—ମହାପ୍ରଭୁ, ଆପଣ ମତେ ଯାହା ଖାଇବାକୁ ଦେବେ ମୁଁ ସେହିଥିରୁ ଏହାକୁ ଖୁଆଇବି । ଏହା ସକାଶେ ଆପଣଙ୍କୁ ସ୍ୱତନ୍ତ୍ର କିଛି ଦେବାକୁ ହେବ ନାହିଁ ।

ବ୍ରାହ୍ମଣ—(ବିରକ୍ତ ହୋଇ) ମୁଁ ତୁମ୍ଭଙ୍କୁ ପ୍ରତ୍ୟହ ସେରେ ଚାଉଳ ଦେବି ।

ଶୈବ୍ୟା—ମହାପ୍ରଭୁ, ସେହିତ ଆମ୍ଭ ଦୁଇଜଣଙ୍କୁ ଯଥେଷ୍ଟ ହେବ ।

ବ୍ରାହ୍ମଣ ତାହା ଶୁଣି ଶୈବ୍ୟା ଏବଂ ରୋହିତାଶ୍ୱଙ୍କୁ ଘେନି ପ୍ରସ୍ଥାନ କଲେ । ହରିଶ୍ଚନ୍ଦ୍ର ଚାରିକୋଟି ମୁଦ୍ରା ବିଶ୍ୱାମିତ୍ରଙ୍କୁ ପ୍ରଦାନ କଲେ । ବିଶ୍ୱାମିତ୍ର ତାହା ଗ୍ରହଣ କରି ଅବଶିଷ୍ଟ ତିନିକୋଟି ମୁଦ୍ରା ସକାଶେ ଭର୍ତ୍ସନା କଲେ । ହରିଶ୍ଚନ୍ଦ୍ର ବିଶ୍ୱାମିତ୍ରଙ୍କ ବାକ୍ୟବାଣରେ ଜର୍ଜ୍ଜରିତ ଓ ନିରୁପାୟ ହୋଇ ଆତ୍ମବିକ୍ରୟଦ୍ୱାରା ସତ୍ୟପାଳନ କରିବାକୁ କୃତ-

ସଙ୍କଳ୍ପ ହେଲ୍ । ଶ୍ମଶାନର ଅଧୀଶ୍ୱର ଜଣେ ଚଣ୍ଡାଳ, ଶ୍ମଶାନର ଶବ-ଦାହକାର୍ଯ୍ୟରେ ନିଯୁକ୍ତ କରିବା ଉଦ୍ଦେଶ୍ୟରେ ହରିଶ୍ଚନ୍ଦ୍ରଙ୍କୁ କ୍ରୟ କରି-ବାକୁ ଉଦ୍ୟତ ହେଲେ । ଏହିପରି ନୀଚ ଏବଂ ନୃଶଂସକାର୍ଯ୍ୟରେ ନିଯୁକ୍ତ ହେବାକୁ ହେବ ବୋଲି ହରିଶ୍ଚନ୍ଦ୍ର ଅତ୍ୟନ୍ତ କାତରତା ପ୍ରକାଶ କଲେ, ମାତ୍ର କୂଟବୁଦ୍ଧି ବିଶ୍ୱାମିତ୍ରଙ୍କ କଠିନହୃଦୟ ଏଥିରେ ଲେଶମାତ୍ର ବିଚଳିତ ହେଲା ନାହିଁ । ଅବଶେଷରେ ଅଯୋଧ୍ୟାର ରାଜରାଜେଶ୍ୱର ହରିଶ୍ଚନ୍ଦ୍ର ଚଣ୍ଡାଳର କ୍ରୀତଦାସ ହୋଇ ବିଶ୍ୱାମିତ୍ରଙ୍କୁ ଅବଶିଷ୍ଟ ଦକ୍ଷିଣା ପ୍ରଦାନ କରି ସତ୍ୟପାଳନ କଲେ ।

ମହାରାଜ ହରିଶ୍ଚନ୍ଦ୍ର ଚଣ୍ଡାଳଦାସ ହୋଇ ଶୂକରପାଳନ, ଶବ-ଦାହ, ମୃତର ବସ୍ତ୍ରାଦି ସଂଗ୍ରହକାର୍ଯ୍ୟରେ ନିଯୁକ୍ତ ହେଲେ । ହରିଶ୍ଚନ୍ଦ୍ର ନୀଚ ଚଣ୍ଡାଳକାର୍ଯ୍ୟରେ ନିଯୁକ୍ତ ହୋଇ ଅଳ୍ପଦିନରେ ଚଣ୍ଡାଳାକୃତି ଧାରଣ କଲେ । ମହାରାଣୀ ଶୈବ୍ୟା ବ୍ରାହ୍ମଣଗୃହରେ ଦାସୀକାର୍ଯ୍ୟରେ ନିଯୁକ୍ତା ରହି ଯେଉଁ ଏକ ସେର ଚାଉଳ ପାଉଥିଲେ ତାହାର ତିନିପା ରୋହିତାଶ୍ୱ ତିନି ଥରରେ ଭୋଜନ କରୁଥିଲେ । ଅବଶିଷ୍ଟ ଏକ ପା ଶୈବ୍ୟା ଭୋଜନ କରି ଅତି କଷ୍ଟରେ କାଳଯାପନ କରୁଥିଲେ । ଦିନେ ବ୍ରାହ୍ମଣ ଶୈବ୍ୟାଙ୍କୁ କହିଲେ—'ତୁମ୍ଭେ ପ୍ରତ୍ୟହ ଅର୍ଦ୍ଧାଶନ କରି ଦୁର୍ବଳ ହେଉଅଛ, ତୁମ୍ଭର ପୁତ୍ର ପ୍ରତ୍ୟହ ମୋ ସକାଶେ ଫୁଲ ତୋଳି ଆଣିଲେ ମୁଁ ତାହାକୁ ପ୍ରତ୍ୟହ ସେରେ ଚାଉଳ ଦେବି ।'

ଶୈବ୍ୟା ବ୍ରାହ୍ମଣପ୍ରଭୁଙ୍କ ଆଦେଶାନୁସାରେ ପ୍ରତ୍ୟହ ପୁତ୍ରକୁ ଫୁଲ-ତୋଳି ଆଣିବାକୁ କହିଲେ । ଦିନେ ରୋହିତାଶ୍ୱ ଫୁଲ ତୋଳିବାକୁ ଯାଇ ଗୃହ ପ୍ରତ୍ୟାଗମନ ନ କରିବାରୁ ଶୈବ୍ୟା ଚିନ୍ତିତା ହୋଇ ପୁତ୍ରର ଅନ୍ୱେଷଣ କରିବାକୁ ଗଲେ । ଉଦ୍ୟାନ ମଧ୍ୟରେ ନାନାସ୍ଥାନ ଅନ୍ୱେଷଣ କରୁ୨ ଶୈବ୍ୟା ଦେଖିଲେ ପ୍ରିୟତମ ପୁତ୍ର ସର୍ପଦଂଶନରେ ଜୀବନ-

ଶୂନ୍ୟ ହୋଇ ଏକ ବୃକ୍ଷମୂଳରେ ପତିତ ହୋଇଅଛୁ । ଯାହାକୁ ଅବଲମ୍ବନ କରି ସେ ଏହି ଦୁର୍ଦ୍ଦଶାରେ ମଧ୍ୟ ଶାନ୍ତମନ ରହୁଥିଲେ, ଯାହାର ମୁଖାବଲୋକନ କଲେ ତାଙ୍କର ସମସ୍ତ ମନସ୍ତାପ ଦୂରିତ ହେଉଥିଲା, ସେହି ଅଞ୍ଚଳନିଧି ହରାଇ ଶୈବ୍ୟା ମୂର୍ଚ୍ଛିତା ହୋଇ ପଡ଼ିଲେ । ତଦନନ୍ତର ଚେତନା ପାଇ ମୃତପୁତ୍ରକୁ କୋଳରେ ଘେନି ବହୁବିଳାପ କଲେ । ବ୍ରାହ୍ମଣପ୍ରଭୁ ଆଦେଶ ଦେବାରୁ ଶୈବ୍ୟା ସତ୍କାର କରିବାକୁ ଏକାକୀ ପୁତ୍ରର ଶବ ଘେନି ଶ୍ମଶାନକୁ ଗଲେ । ଶ୍ମଶାନରେ ଏକ ଚଣ୍ଡାଳର ଭୀଷଣରୂପ ଦେଖି ଶୈବ୍ୟା ଅତ୍ୟନ୍ତ ଭୀତା ହେଲେ । ସେହି ଚଣ୍ଡାଳ, ଯେଉଁମାନେ ଶ୍ମଶାନକୁ ଶବ ଘେନି ସତ୍କାର କରିବାକୁ ଆସୁଥିଲେ, ସେମାନଙ୍କଠାରୁ ଶୁଳ୍କସଂଗ୍ରହ କରୁଥିଲା । ଚଣ୍ଡାଳ ଶୈବ୍ୟାଙ୍କୁ କହିଲା— 'ତୁ ଏହି ପିଲାଟା ପୋଡ଼ିବୁ, ଅଚ୍ଛା ତେବେ କୋଡ଼ିଏ କାହାଣ କଉଡ଼ି ଦେ' ।

ଶୈବ୍ୟା—( କରୁଣସ୍ୱରରେ ) ମୁଁ ବଡ଼ ଦୁଃଖିନୀ । ମୁଁ ପର ଘରେ ଦାସୀ କାମ କରି ଦିନ କଟାଉଅଛି, ମୁଁ କୋଡ଼ିଏ କାହାଣ କାହୁଁ ଆଣିବି ।

ଚଣ୍ଡାଳ—କଥଁଲ କଥାରେ ମଡ଼ା ପୋଡ଼ା ହେଉଥିଲେ ଲୋକେ କଉଡ଼ି କାହିଁକି ଦିଅନ୍ତେ ? ବଡ଼ ମଣିଷକୁ ପଚିଶ କାହାଣ, ତୁ ପିଲାଟାଏ ଆଣିଛୁ ବୋଲି କୋଡ଼ିଏ କାହାଣ କହିଲି । ଯେବେ ଦେବୁ ତ କହ, ନ ଦେବୁ ତ ସିଧା ବାଟ ପଡ଼ିଛି ଚାଲିଯା ।

ଶୈବ୍ୟା—ମୁଁ ବଡ଼ ଦୁଃଖିନୀ, ମୋ ଦୁଃଖ ଶୁଣିଲେ ପାଷାଣ ତରଳିବ । ମତେ ଦୟା କର, ନ ହେଲେ ମୋର ଏହି ପିନ୍ଧିବା ଲୁଗାରୁ ଅଧେ ଚିରି ଦେଉଅଛି ନିଅ ।

ଚଣ୍ଡାଳ—ଆରେ ନା ସେକଥା ହେବ ନାହିଁ । ମୋର ଯେଉଁ ମୁନିବ

କଉଡ଼ି କଡ଼ାଏ ଛାଡ଼ିବ ନାହିଁ । ଅଉ ତୁ ପିଲ୍ଲଟାକୁ ଏକା କାଖେଇ ଘେନ ଆସିଛୁ; କନ୍ଥା, କଉସ, କ କନା ଖଣ୍ଡିଏ ଅଣି ନାହୁଁ । ଅଚ୍ଛା ତୁହି କହିଲୁ, ମୁଁ ମୋର ମୁନିବଙ୍କୁ କ ହିସାବ ଦେବ ?

ଶୈବ୍ୟା—ଦୈବ ! ମୋ କପାଳରେ ପୁଣି ଏହା ଥିଲା ? ଏହି ହାତରେ କେତେ ଲୋକଙ୍କୁ କେତେ ସମ୍ପଦ ଦେଇ ଥିଲି, ଅଜି ସାମାନ୍ୟ କଉଡ଼ି ଲାଗି ପୁଅର ଗତି କର ପାରଲି ନାହିଁ । ମୋ ପର ଘୃନକପାଳୀ ସଂସାରରେ ଜନ୍ମ ହୋଇ ନାହାନ୍ତି କ ହେବେ ନାହିଁ ।

ଚଣ୍ଡାଳ—ସସାରରେ ଅନେକ ଯନ୍ତ୍ରଣା ପାଇଛୁ ବୋଲି ଏପର କହୁଛୁ । ତୁ ଯେତେ କହ, ମୋ ଦୁଃଖକୁ ତୋ ଦୁଃଖ ବଳବ ନାହିଁ ।

ଶୈବ୍ୟା—ତୁମ୍ଭେ ଚଣ୍ଡାଳଘରେ ଜନ୍ମି ଚଣ୍ଡାଳକାର୍ଯ୍ୟ କରୁଅଛ, ଏହା ବଡ଼ ଦୁଃଖ, ନା, ରାଜକନ୍ୟା ହୋଇ, ଦାନବୀର ଶୂରଶ୍ରେଷ୍ଠ ରାଜାଧିରାଜଙ୍କ ସହଧର୍ମିଣୀ ହୋଇ, ସାମ୍ରାଜ୍ୟସୁଖଭୋଗ ଓ ପତିସହବାସରୁ ବଞ୍ଚିତା ହୋଇ ପରର ଦାସୀପଣ କର ଦିନ କଟାଉଅଛୁ, ଏହା ବଡ଼ ଦୁଃଖ ? ଦୈବ ମତେ ଏତେ ସବ କଷ୍ଟ ନିରସ୍ତ ହେଲା ନାହିଁ; ମୋର ପ୍ରାଣର ପ୍ରାଣ, ମୋର ଜୀବନର ଜୀବନ, ରଙ୍କର ସଞ୍ଚାନକୁ ଘେନ ଗଲା । ହରିଶ୍ଚନ୍ଦ୍ର ! କେଉଁଠାରେ ରହିଲ ! ତୁମ୍ଭର ପ୍ରିୟତମା ଶୈବ୍ୟାର ଏହି ଦଶା ଥରେ ଅଖିରେ ଦେଖିଲ ନାହିଁ ।

( ଶୈବ୍ୟା ଏହିପର ବିଳାପ କର ମୂର୍ଚ୍ଛିତା ହୋଇ ପଡ଼ିଲେ ।)

ଚଣ୍ଡାଳ—( ଶୈବ୍ୟାଙ୍କୁ କୋଡ଼ରେ ଘେନ ଗଦ୍ଗଦବଚନରେ, ) ଦେବୀ ! ପ୍ରିୟତମେ ! ଉଠ, ଦେଖ ତୁମ୍ଭର ଅଧମସ୍ୱାମୀ ହରିଶ୍ଚନ୍ଦ୍ର ତୁମ୍ଭକୁ ଡାକୁଅଛ ।

ଶୈବ୍ୟା—(ଚେତନା ଲାଭ କର ଏବଂ ଘୃଣା ପ୍ରଦର୍ଶନପୂର୍ବକ ଚଣ୍ଡାଳ-କୋଡ଼ ତ୍ୟାଗ କର ) ଦୈବ ! (କପାଳରେ କରାଘାତ କର) କପାଳ-

ରେ ଏହା ଲେଖିଥିଲୁ । ଚଣ୍ଡାଳଠା ମତେ ଏଡେସର ଅବସ୍ଥା କରୁ-ଅଛ । ଆଉ ଏ ଛାର ଜୀବନ ରଖିବ ନାହିଁ ।

ଚଣ୍ଡାଳ—ଦେବ ! ଚଣ୍ଡାଳ କାର୍ଯ୍ୟ, ଚଣ୍ଡାଳ ବେଶ, ଏବଂ ଚଣ୍ଡାଳ ସହବାସ ମତେ ଚଣ୍ଡାଳ କରଅଛ । ଯେଉଁ ହରିଶ୍ଚନ୍ଦ୍ର ଅପଣାକୁ ଋଣ-ମୁକ୍ତ କରିବା ସକାଶେ, ରକ୍ଷକ ଓ ରକ୍ଷ୍ୟ ହୋଇ ସତୀ ସ୍ଵାଧ୍ଵୀ ପୁତ୍ରବତୀ ପତ୍ନୀଙ୍କୁ ଅନ୍ୟକୁ ବିକ୍ରୟ କରିଥିଲା, ମୁଁ ସେହି ନରାଧମ ହରିଶ୍ଚନ୍ଦ୍ର । (ଲଲାଟରେ ପତିତ କେଶୋତ୍ତୋଳନ କରି) ଦେବୀ ଦେଖ ଏହି ଚିହ୍ନ ଦେଖିଲେ ତୁମ୍ଭର ଆଉ ସନ୍ଦେହ ରହିବ ନାହିଁ ।

ଶୈବ୍ୟା—ମହାରାଜ ! ( ହରିଶ୍ଚନ୍ଦ୍ରଙ୍କ ପଦତଳେ ମୂର୍ଚ୍ଛିତା ହୋଇ ପଡନ୍ତି ।)

ହରି—( ଶୈବ୍ୟାଙ୍କୁ ସଚେତନ କରାଇ) ଏହି ଦୁଃଖର ଜୀବନ ଆଉ ରଖିବା ନାହିଁ । ଅସ ପୁତ୍ର ଚିତାରେ ଦୁଇଜଣ ପ୍ରାଣ ବିସର୍ଜନ କରିବା ।

( ହରିଶ୍ଚନ୍ଦ୍ର ଏହା କହି ଚିତା ପ୍ରସ୍ତୁତ କରିବାକୁ ଉଦ୍ୟତ ହେଲେ ।)

ଶୈବ୍ୟା—ମହାରାଜ, ଦେଖନ୍ତୁ, ମୋର ବ୍ରାହ୍ମଣପ୍ରଭୁ, ମୋର ବିଳମ୍ବ ହେବରୁ ଏଠାକୁ ଆସୁଛନ୍ତି ।

ବ୍ରାହ୍ମଣ—ସତୀ ଶୈବ୍ୟା, ତୁମ୍ଭେ ମୋର ଋଣରୁ ମୁକ୍ତହେଲ । ମୁଁ ତୁମ୍ଭଙ୍କୁ ଦାସୀତ୍ଵରୁ ମୁକ୍ତଦାନ କଲି ।

(ଶ୍ମଶାନ ଅଧୀଶ୍ଵର ଚଣ୍ଡାଳର ପ୍ରବେଶ ।)

ଚଣ୍ଡାଳ—( କରଯୋଡ଼ରେ ) ରାଜାଧିରାଜ ହରିଶ୍ଚନ୍ଦ୍ର ଅପଣ ମୋ ଋଣରୁ ମୁକ୍ତ ହେଲେ । ଅପଣ ଯଥେଚ୍ଛା ଗମନ କରି ପାରନ୍ତି ।

(ବିଶ୍ୱାମିତ୍ରଙ୍କ ପ୍ରବେଶ ।)

ବିଶ୍ଵାମିତ୍ର—ଦାନବୀର ସତ୍ୟପ୍ରିୟ ମହାରାଜ ହରିଶ୍ଚନ୍ଦ୍ର, ତୁମ୍ଭର ରାଜ୍ୟ

ତୁମ୍ଭେ ଗ୍ରହଣ କର, ମୁଁ ତୁମ୍ଭକୁ ପ୍ରତିଦାନ କଲି । ରାଜ୍ୟଶାସନରେ ନିଯୁକ୍ତ ରହି ତପସ୍ୟା କାର୍ଯ୍ୟରେ ମୋର ସମ୍ପୂର୍ଣ୍ଣ ବ୍ୟାଘାତ ହେଉଅଛି ।

ହରି—ମହାତ୍ମାଙ୍କ ଆଦେଶ ମୋର ଶିରୋଧାର୍ଯ୍ୟ ।

ଦୈବୋପାୟରେ ରୋହିତାଶ୍ୱ ପ୍ରାଣଲାଭ କରିବାରୁ, ହରିଶ୍ଚନ୍ଦ୍ର ସ୍ତ୍ରୀ-ପୁତ୍ର ସହ ଅଯୋଧ୍ୟାକୁ ପ୍ରତ୍ୟାଗମନ କରି ପରମସୁଖରେ ରାଜ୍ୟଶାସନ କଲେ ।



ଅଷ୍ଟମ ସନ୍ଧ୍ୟା ।

## ପ୍ରକୃତ ଗୃହିଣୀ ।

ଲୀଳାବତୀ—ଆଈ, ଆଜି କିଛି କହ ।

ହଣାମଣି—ଆଈ ଆଜି କାହା କଥା କହିବ ?

ଆଈ—ତୁମ୍ଭେମାନେ ବଡ଼ ହେଲଣି, ଆଉ ଅଳ୍ପଦିନରେ ଗୃହସ୍ଥାଶ୍ରମ କରିବ । ତୁମ୍ଭେମାନେ ଆଜଠୁଁ ଗୃହସ୍ଥାଶ୍ରମର କାର୍ଯ୍ୟ ସବୁ ଶିଖ । ଆଜି ଏକ ଗୃହିଣୀଙ୍କ କାହାଣୀ କହିବି ମନ ଦେଇ ଶୁଣ ।

ପଦ୍ମାବତୀ—ହଉ, ତେବେ କହ ।

ଆଈ—ଶିବ ଦେଶରେ ଏକ ଧନବାନ୍ ବଣିକ ଥିଲେ । ପତ୍ନୀ ଏବଂ କନ୍ୟା ବ୍ୟତୀତ ତାହାଙ୍କର ସଂସାରରେ ଅନ୍ୟ ଆତ୍ମୀୟ କେହି ନ ଥିଲେ । ତାହାଙ୍କ କନ୍ୟା ଗୋମିନୀ ଯେପରି ରୂପବତୀ ସେହିପରି ଗୁଣବତୀ ଥିଲେ । ଦୈବ ପ୍ରତିକୂଳ ହେବାରୁ ବଣିକ ଅତ୍ୟନ୍ତ ଦୁରବସ୍ଥାରେ ପତିତ ହେଲେ । ଜୀର୍ଣ୍ଣଗୃହ ବ୍ୟତୀତ ତାହାଙ୍କର ସମସ୍ତ ସମ୍ପତ୍ତି ହସ୍ତାନ୍ତରିତ ହୋଇ ଗଲା । ଗୋମିନୀ ସୂତାକାଟି ଏବଂ ଅନ୍ୟାନ୍ୟ କାର୍ଯ୍ୟ କରି ପିତାମାତାଙ୍କୁ ପାଳନ କଲେ । ଦୁର୍ଦ୍ଦଶାରେ ପତିତ ହେଲେହେଁ ବଣିକ ଏବଂ ବଣିକପତ୍ନୀ ଗୋମିନୀଙ୍କ ସେବାଶୁଶ୍ରୂଷା ହେତୁ କୌଣସି ପ୍ରକାର କଷ୍ଟାନୁଭବ କଲେ ନାହିଁ ।

ଦିନେ ଗୋମିନୀ ଗୃହକାର୍ଯ୍ୟ ଏବଂ ପିତୃମାତୃ ସେବା ସାରି, ଦ୍ୱାରଦେଶରେ ବୃଦ୍ଧାଦାସୀସହ ଉପବିଷ୍ଟା ହୋଇ କଥୋପକଥନ କରୁ ଅଛନ୍ତି; ଏମନ୍ତ ସମୟରେ ଏକ ଦୈବଜ୍ଞ ଉପସ୍ଥିତ ହୋଇ, ଏବଂ ସ୍ୱୀୟ ବସ୍ତ୍ର ପ୍ରାନ୍ତରେ ଅବଦ୍ଧ ଧାନ୍ୟଗଣ୍ଡିକ ଦେଇ ଗୋମିନୀଙ୍କୁ କହିଲେ—

'ମୁଁ ବଡ଼ ଶ୍ରାନ୍ତ ହୋଇଅଛୁ, ତୁମ୍ଭେ ଏହି ଥାଳଗୁଡ଼ିକ ନେଇ ମତେ ଉତ୍ତମ ଅନ୍ନ ବ୍ୟଞ୍ଜନ ଭୋଜନ କରାଇ ପାରିବ ?'

ଗୋମିନୀ ଦୈବଜ୍ଞଙ୍କୁ ଆସନ ପ୍ରଦାନ କରି, ଦାସୀକୁ ସଙ୍କେତ କରିବାରୁ, ଦାସୀ ଦୈବଜ୍ଞ ହସ୍ତରୁ ଥାଳଗୁଡ଼ିକ ନେଇ ଗୋମିନୀଙ୍କୁ ଦେଲା । ଗୋମିନୀ ଥାଳଗୁଡ଼ିକୁ ଖରାରେ ଶୁଖାଇ କୁଟି, ତୁଷ୍ କାଢ଼ି ସେହି ତୁଷ୍ ଦାସୀ ହସ୍ତରେ ଦେଇ କହିଲେ—'ବର୍ଣ୍ଣଅମାନେ ଅଳଙ୍କାର ପରିଷ୍କାର କରିବା ସକାଶେ ତୁଷ୍ କିଣନ୍ତି । ତୁମ୍ଭେ ଏହାକୁ ବିକି ଯାହା ପାଇବ ସେଥିରେ ଖୁବ ଶୁଖିଲା ନୁହେଁ କି ଖୁବ ଓଦା ନୁହେଁ ଏହିପରି କେତେଖଣ୍ଡି କାଠ, ଗୋଟିଏ ସାନ ହାଣ୍ଡି ଏବଂ ଦୁଇଖଣ୍ଡି ଶରା ନେଇ ଆସିବ ।'

ଦାସୀ ସେହିପରି କରିବାରୁ, ଗୋମିନୀ ଚାଉଳକୁ କାଣ୍ଡି ବାଛି, ଚାଉଳ, କୁଣ୍ଡା, ଓ ଖୁଦକୁ ପୃଥକ୍ ୨ କରି ରଖିଲେ । ତାହା ଉତ୍ତାରୁ ଚାଉଳକୁ ବାରମ୍ବାର ପରିଷ୍କୃତ ଜଳରେ ଧୋଇ ରଖିଲେ । ଚାଉଳର ପାଞ୍ଚଗୁଣ ଜଳ ହାଣ୍ଡିରେ ଦେଇ ଚୁଲ୍ଲିରେ ବସାଇଲେ । ଜଳ ଉଷ୍ଣ ହେଲା ଉତ୍ତାରୁ ସେଥିରେ ଚାଉଳ ପକାଇ ଦେଲେ । ଚାଉଳ ଫୁଟି ଅସିଲାରୁ କରଛୁଲ୍ଲି-ରେ ତାହାକୁ ଘାଣ୍ଟି ଦେଇ ଖଣ୍ଡିଏ ଶରା ଘୋଡ଼ାଇ ଦେଲେ । ଚାଉଳ-ଗୁଡ଼ିକ ସମଭାବରେ ସୁସିଦ୍ଧ ହେଲାରୁ ଖଣ୍ଡିଏ ଶରାରେ ପେଜ ଗାଳି ରଖି, ଭାତହାଣ୍ଡିକୁ ଚୁଲ୍ଲିରୁ ଓହ୍ଲାଇ ଶରା ଘୋଡ଼ାଇ ରଖିଲେ । ତାହା ଉତ୍ତାରୁ ଜଳୁଥିବା କାଠ ପାଣିପକାଇ ନିଭାଇ ରଖି ଜ୍ୱଳନ୍ତା ଅଙ୍ଗାରକୁ ପାଣି ଛିଞ୍ଚି ନିଭାଇ ଦେଲେ । ଗୋମିନୀ ଦାସୀକୁ ଖୁଦ, କୁଣ୍ଡା, ଓ ଅଙ୍ଗା-ରମାନ ଦେଇ କହିଲେ, ଏସବୁ ବିକି ସେହି ମୂଲ୍ୟରେ ଶାଗ, ଘିଅ, ତେନ୍ତୁଳ, ଲୁଣ, ତେଲ ଯାହା ମିଳିବ ନେଇ ଆସ । ଦାସୀ ସେହିପରି କଲାରୁ ଗୋମିନୀ ଦୁଇ ତିନି ପ୍ରକାର ଶାଗଭାଜି ଏବଂ ଚଟଣି ପ୍ରସ୍ତୁତ

କଲେ । ଶରାରେ ଥିବା ପେଜ ସଙ୍ଗେ ଲୁଣ ପ୍ରଭୃତି ଦେଇ ଏକପ୍ରକାର ଉତ୍କୃଷ୍ଟ ପେୟ ପ୍ରସ୍ତୁତ କଲେ । ତହିଁଉତ୍ତାରୁ ଅତିଥିଙ୍କୁ ସ୍ନାନ କରି ଆସିବା ସକାଶେ ଗୋଟିଏ ପାତ୍ରରେ ତେଲ ଦେଲେ । ଅତିଥି ସ୍ନାନ କରି ଆସିଲାରୁ, ଉପବେଶନ କରିବା ସକାଶେ ତାହାଙ୍କୁ ଖଣ୍ଡିଏ ପିଢ଼ା ଦେଲେ । ଗୋମିନୀ ତାହାଙ୍କ ସମ୍ମୁଖରେ ଶରାରେ ଥିବା ପେୟ ଦ୍ରବ୍ୟ ଏବଂ ଖଣ୍ଡିଏ କଦଳୀପତ୍ରରେ ଘୃତଯୁକ୍ତ ଅନ୍ନ, ଶାଗଭଜି, ଚଟଣି ଦେଲେ । ଅତିଥି ତାହା ତୃପ୍ତିପୂର୍ବକ ଭୋଜନ କଲାରୁ, ଗୋମିନୀ ହାଣ୍ଡିରେ ଥିବା ଅବଶିଷ୍ଟ ଅନ୍ନ ଦଧିମିଶ୍ରିତ କରି ପ୍ରଦାନ କଲେ । ତଦ-ନନ୍ତର ଅତିଥିଙ୍କୁ ଜଳପାନ କରାଇ, ଆଚମନ କରିବାକୁ ଜଳ ପ୍ରଦାନ କଲେ । ଅତିଥି ଗୋମିନୀଙ୍କ ଜନକସହ ନିର୍ଜ୍ଜନରେ କଥୋପକଥନ କରି ପରିଶେଷରେ ଗୋମିନୀଙ୍କ ପାଣିଗ୍ରହଣାଭିଳାଷୀ ହେଲେ । ବୃଦ୍ଧ ବଣିକ ଗୋମିନୀଙ୍କୁ ବହୁ ସଦୁପଦେଶ ଦେଇ, ଯଥା ବିଧାନରେ ଅତି-ଥିଙ୍କ ସହ ବିବାହ ପ୍ରଦାନ କଲେ । ଅତିଥି ଗୋମିନୀସହ ଗୃହ ପ୍ରତ୍ୟା-ଗମନ କଲେ । ବାଟରେ ଆସୁ ଆସୁ ଅତିଥି ଗୋମିନୀଙ୍କୁ ପଚାରିଲେ— 'ମତେ ବିବାହ କରି ତୁମ୍ଭ ମନରେ କୌଣସି ପ୍ରକାର ଦୁଃଖ ହୋଇ-ଅଛି କି ?'

ଗୋମିନୀ କହିଲେ—ଅପଣ ମୋର ପରିଚିତ ନୁହନ୍ତି, ବାପା ସବୁବେଳେ ମୋର ମଙ୍ଗଳଚିନ୍ତା କରନ୍ତି, ସେ ନ ବୁଝି ଅପଣଙ୍କୁ ଦେଇ ନାହାନ୍ତି । ସେ ଯାହା କରିଅଛନ୍ତି ସେଥିରେ ମୋର ମଙ୍ଗଳ ବ୍ୟତୀତ ଅମଙ୍ଗଳ ହେବ ନାହିଁ । ଏଣୁ ମୁଁ ଦୁଃଖର କୌଣସି କାରଣ ଦେଖି ନାହିଁ ।

ତାଙ୍କ ସ୍ୱାମୀ କହିଲେ—ତୁମ୍ଭେ କୌଣସି ଧନବାନ୍ ବଣିକ

ଘରକୁ ଯାଇଥିଲେ ସୁଖରେ ରହିଥାନ୍ତ, ମୁଁ ବଡ଼ ଦରିଦ୍ର, ମୋର ଗୃହିଣୀ ହୋଇ ତୁମ୍ଭକୁ କଷ୍ଟ ପାଇବାକୁ ହେବ ।

ଗୋମିନୀ କହିଲେ—ଆପଣ ସୁଖରେ ରହିଲେ ମୋର ସୁଖ, ମୋ ସକାଶେ ଆପଣ ଚିନ୍ତା କରିବେ ନାହିଁ । ମୁଁ ନିଜେ ପରିଶ୍ରମ କରି ମୋର ଅନ୍ନବସ୍ତ୍ରର ସଂସ୍ଥାନ କରି ପାରିବ ।

ସେମାନେ ଏହି ପରି କେତେକ ଦିନ ଗମନ କରି କାଞ୍ଚୀନଗରରେ ଉପସ୍ଥିତ ହେଲେ । ଗୋମିନୀଙ୍କ ସ୍ୱାମୀ କହିଲେ—ଏହି ନଗରରେ ମୋର ଜଣେ ବନ୍ଧୁ ଅଛନ୍ତି, ତାଙ୍କର ନାମ ଶକ୍ତିକୁମାର । ସେ ବହୁ-କୋଟୀ ଧନର ଅଧୀଶ୍ୱର ଅଟନ୍ତି, ଚାଲ ଆଜି ତାଙ୍କ ଘରେ ଅତିଥି ହେବା ।

ଗୋମିନୀ କହିଲେ—ଆପଣ ଯାହା ଆଜ୍ଞା କରିବେ ମୁଁ ତାହା ପାଳନ କରିବ । ସେ ଆପଣଙ୍କର ବନ୍ଧୁ, ଆପଣ ତାଙ୍କ ଘରକୁ ଯାଇ ପାରନ୍ତି, ବିନା ଅମନ୍ତ୍ରଣରେ ତାଙ୍କ ଘରକୁ ମୋର ଯିବା ଉଚିତ କି ନା ଆପଣ ବିଚାର କରି ଦେଖନ୍ତୁ ।

ତାଙ୍କ ସ୍ୱାମୀ କହିଲେ—ଶକ୍ତିକୁମାର ଏବଂ ମୋର ଶରୀର ଭିନ୍ନ ହେଲେହେଁ, ଆତ୍ମା ଏକ କହିଲେ ହୁଏ । ମୁଁ ତାଙ୍କ ମନ କଥା ଜାଣି ନ ଥିଲେ ତୁମ୍ଭଙ୍କୁ ତାଙ୍କ ଘରକୁ ଘେନ ଯାନ୍ତି ନାହିଁ ।

ଗୋମିନୀ ସ୍ୱାମୀସହ ଶକ୍ତିକୁମାରଙ୍କ ଘରଠାରେ ଉପସ୍ଥିତ ହୋଇ ଦେଖିଲେ, ରାଜପ୍ରାସାଦତୁଲ୍ୟ ସୁବୃହତ୍ ଅଟ୍ଟାଳିକାର ଦ୍ୱାରଦେଶରେ ବନ୍ଧୁକଧାରୀ ସଶସ୍ତ୍ର ପ୍ରହରୀ ଦଣ୍ଡାୟମାନ ରହି ଅଛନ୍ତି, ଏବଂ ଅଟ୍ଟାଳିକା ପାର୍ଶ୍ୱରେ ପ୍ରାଚୀର ବେଷ୍ଟିତ ସୁବିସ୍ତୃତ ରମଣୀୟ ଉଦ୍ୟାନ ବିବିଧ ଫଳ ଫୁଲରେ ସୁଶୋଭିତ ହୋଇଅଛି । ସ୍ୱାମୀସହ ଅଟ୍ଟାଳିକାରେ ପ୍ରବେଶ କାଳରେ ଗୋମିନୀଙ୍କୁ କେହି ବାରଣ କଲା ନାହିଁ । ଗୋମିନୀ ଅଟ୍ଟା-

ଢକାର ନାନାସ୍ଥାନ ପରିଦର୍ଶନ କରି, ଶକ୍ତିକୁମାରଙ୍କୁ ଅତୁଳ ବିଭ-ବର ଅଧିକାରୀ ବୋଲି ହୃଦୟଙ୍ଗମ କଲେ । ଅବଶେଷରେ ଏକ ପ୍ରଶସ୍ତ କକ୍ଷରେ ପ୍ରବିଷ୍ଟ ହୋଇ ଦେଖିଲେ ସେହି କକ୍ଷ ସୁବର୍ଣ୍ଣମୁଦ୍ରା ଏବଂ ଅମୂଲ୍ୟରତ୍ନରାଜିରେ ପରିପୂର୍ଣ୍ଣ । ସେ ଏହିପରି ବିଭବ ଦର୍ଶନ କରି ବିସ୍ମିତା ହୋଇ ସ୍ୱାମୀଙ୍କୁ କହିଲେ—'ସଦ୍‌ବ୍ୟୟ ବ୍ୟତୀତ କେବଳ ଧନ ବୃଦ୍ଧି ନିମନ୍ତେ ଧନ ସଞ୍ଚୟ କଲେ ଜୀବନ ବୃଥା ହୁଏ । ଶକ୍ତିକୁମାର ବୋଧ ହୁଏ ଧନର ସଦ୍‌ବ୍ୟୟ କରୁଥିବେ ।'

ତାଙ୍କର ସ୍ୱାମୀ କହିଲେ—ତୁମ୍ଭର ଏହିପରି ଧନ ଥିଲେ ତୁମ୍ଭେ କଅଣ କରନ୍ତ ?

ଗୋମିନୀ କହିଲେ—ଧନ କପରି ବୃଦ୍ଧି ହୁଅନ୍ତା ତାହାର ଉପାୟ କରନ୍ତି, ଏବଂ ପ୍ରଭୂତ ଧନବ୍ୟୟ କରି ଦେଶର ଉପକାର କରନ୍ତି ।

ତାହାଙ୍କ ସ୍ୱାମୀ ହସି କହିଲେ— ଆଜିଠାରୁ ଏହି ଅଟ୍ଟାଳିକା, ଧନ ରତ୍ନାଦି ତୁମ୍ଭର ହେଲା । ମୁଁ ତୁମ୍ଭଙ୍କୁ ପରୀକ୍ଷା ନିମନ୍ତେ ଏହି ଉପାୟ ଅବଲମ୍ବନ କରିଥିଲି । ମୋର ନାମ ଶକ୍ତିକୁମାର, ମୁଁ ଏହି ସମସ୍ତ ସମ୍ପଦର ଅଧିକାରୀ । ସୁଲକ୍ଷଣା ଗୁଣବତୀ ସ୍ତ୍ରୀ ଅନ୍ୱେଷଣ କରିବା ନିମନ୍ତେ ଦୈବଜ୍ଞ ବେଶ ଧରି, ଲୁଗା କାନିରେ ଧାନ ବାନ୍ଧି ମୁଁ ନାନାସ୍ଥାନ ଭ୍ରମଣ କରିଅଛି । ତୁମ୍ଭଙ୍କୁ ଯେପରି ଭୋଜନ ପ୍ରାର୍ଥନା କରିଥିଲି ସେହିପରି ନାନାସ୍ଥାନରେ ପ୍ରାର୍ଥନା କରି, କୌଣସି ସ୍ଥାନରେ ଉପହାସାସ୍ପଦ, କୌଣସି ସ୍ଥାନରେ ତିରସ୍କୃତ, କୌଣସି ସ୍ଥାନରେ ଅବା ଉନ୍ମାଦାଖ୍ୟା ପ୍ରାପ୍ତ ହୋଇଥିଲି । ତୁମ୍ଭଠାରେ ମୋ ଆଶା ସଫଳ ହେବାରୁ, ତୁମ୍ଭର ପିତାଙ୍କୁ ଆମ୍ଭ ପରିଚୟ ଦେଇ, ତୁମ୍ଭଙ୍କୁ ପ୍ରାର୍ଥନା କରିଥିଲି । ମାତ୍ର ତୁମ୍ଭଙ୍କୁ ମୋର ପରିଚୟ ଦେବାକୁ ତାଙ୍କୁ ନିଷେଧ କରିଥିବାରୁ, ତୁମ୍ଭେ ତାଙ୍କଠାରୁ ମୋର ପରିଚୟ ପାଇ ନାହଁ । ଏସ୍ଥାନକୁ ଆସିବା ପୂର୍ବେ

ପତ୍ରଦ୍ୱାରା ମୋର କର୍ମଚାରୀମାନଙ୍କୁ ସାବଧାନ କରି ଦେଇଥିଲି । ଏଣୁ ସେମାନେ, ଅଟ୍ଟାଳିକାରେ ପ୍ରବେଶ କାଳରେ ମତେ ଚିହ୍ନି ପାରିଲେ ନାହିଁ । ତୁମ୍ଭେ ଯେପରି ଗୁଣବତୀ ତାହାର ପୁରସ୍କାରସ୍ୱରୂପ ଆଜି ତୁମ୍ଭଙ୍କୁ ଏହି ସମସ୍ତ ଦାନ କଲି, ତୁମ୍ଭେ ଇଚ୍ଛାନୁରୂପ ଏହି ଧନ ବ୍ୟୟ କର ।

ନାରାମଣି—ଆଈ, ଆଜି ରାତି ହୋଇ ନାହିଁ, ଆଉ କିଛି କହ ?

ଆଈ—ତୁମ୍ଭେମାନେ ଏହି ପରି ସାମାନ୍ୟ ଦ୍ରବ୍ୟକୁ ଅବଜ୍ଞା ନ କଲେ ପ୍ରକୃତ ଗୃହିଣୀ ହୋଇ ଘର କରି ଶିଖିବ । ଯେଉଁ ଘରେ ପ୍ରକୃତ ଗୃହିଣୀ ନାହାନ୍ତି ସେହି ଘରୁ ଲକ୍ଷ୍ମୀ ଛାଡ଼ି ପଳାନ୍ତି । ଗୃହିଣୀ ଗୁଣରୁ ଦରିଦ୍ର ଘର ରାଜାଘରଠାରୁ ଅଧିକ ଶୋଭିତ ହୁଏ । ଗୃହିଣୀ ଘରେ କୌଣସି କଥାର ଅଭାବ ନ ଥାଏ । ଅଧିକ କଅଣ କହିବି ଲକ୍ଷ୍ମଣ ବାବୁ ଓ ରାମଦାସ ଘରକଥା ଦେଖ । ଲକ୍ଷ୍ମଣ ବାବୁ ଘରେ ରାମଦାସ ୬୦ ଟଙ୍କା ବେତନରେ ଚାକିରୀ କରନ୍ତି । ଲକ୍ଷ୍ମଣ ବାବୁଙ୍କ ଘରକୁ ବର୍ଷରେ ଲକ୍ଷ୍ୟ ଟଙ୍କା ଆସେ । ମାତ୍ର ତାଙ୍କ ସ୍ତ୍ରୀ ଭଲ ଗୃହିଣୀ ନୁହନ୍ତି । ସେଦିନ ହରି ବେହେରା, ପୁଅକୁ ଔଷଧ ଖୁଆଇବ ବୋଲି ଟୋପାଏ ମହୁ ମାଗି ତାଙ୍କ ଘରୁ ପାଇଲା ନାହିଁ । ମାତ୍ର ରାମଦାସଙ୍କ ସ୍ତ୍ରୀଙ୍କୁ ମାଗିଲାକ୍ଷଣି ସେ ଦେଲେ । ସେଦିନ ରାତିରେ ଲକ୍ଷ୍ମଣ ବାବୁ ଔଷଧ ଖାଇବା ସକାଶେ ଘରେ ଶୁଣ୍ଠ ଖଣ୍ଡିଏ ଖୋଜି ପାଇଲେ ନାହିଁ, ରାମଦାସ ଅପଣା ଘରୁ ଆଣି ଦେଲାରୁ ଔଷଧ ଖାଇଲେ ।

ରାମଦାସଙ୍କ ସ୍ତ୍ରୀ ପ୍ରତିଦିନ ଅତି ପ୍ରତ୍ୟୁଷରେ ଉଠି ବଢ଼ଣା ଉଠାଇ ରଖି, ଘରର ସମସ୍ତ ସ୍ଥାନ ପରିଷ୍କାର କରନ୍ତି । ତାହା ଉତ୍ତାରୁ ଶୌଚଵିଧି ସାରି ପିଲାମାନଙ୍କୁ ଉଠାଇ ସେମାନଙ୍କୁ ଶୌଚବିଧି କରାନ୍ତି । ତାହା ସାରି ଗାଧୋଇ ଆସି ପିଲାମାନଙ୍କୁ କିଛି ଖୁଆଇ ଶ୍ୱଶୁର ଓ ଶାଶୁଙ୍କ ଦାନ୍ତ-କାଠି ପାଣି, ଓ ଗାଧୋଇବା ସକାଶେ ତେଲ ଦିଅନ୍ତି । ପିଲାମାନେ

ସ୍କୁଲକୁ ଯିବେ ବୋଲି ସେମାନଙ୍କ ସକାଶେ ଯଥା ସମୟରେ ଭୋଜନ କରନ୍ତି । ପିଲାମାନେ ଭୋଜନ କରି ସ୍କୁଲକୁ ଗଲେ ଶ୍ୱଶୁର, ଏବଂ ସ୍ୱାମୀଙ୍କୁ ପରିବେଷଣ କରନ୍ତି । ସ୍ୱାମୀଙ୍କ ଭୋଜନ ପରେ ଶାଶୁଙ୍କୁ ଖୁଆଇ ଆପେ ଭୋଜନ କରନ୍ତି । ଭୋଜନ ଉତ୍ତାରୁ ହାଣ୍ଡି ଧୋଇ, ବାସନ ମାଜି ସେସବୁକୁ ଯଥାସ୍ଥାନରେ ରଖି, ଅଳ୍ପକ୍ଷଣ ବିଶ୍ରାମ ଉତ୍ତାରୁ ଭଣ୍ଡାର-ଗୃହ ପ୍ରଭୃତି ସଜ୍ଜିତ କରି ରଖନ୍ତି । ସେ ସମସ୍ତ କାର୍ଯ୍ୟ ଶୃଙ୍ଖଳାପୂର୍ବକ କରନ୍ତି । ଏପରି ଅନେକ ଗୃହିଣୀ ଅଛନ୍ତି ଯେ ସେମାନେ ଭଣ୍ଡାର-ଘରକୁ ଲୁଣ ଆଣିବାକୁ ଯାଇ ଚାଉଳହାଣ୍ଡି, ଡାଲିହାଣ୍ଡି ପ୍ରଭୃତି ଦଘଣ୍ଡି ହୁଅନ୍ତି । ଗାଧୋଇ ଆସି ପିନ୍ଧିବା ଲୁଗା ଖଣ୍ଡିକ ସକାଶେ ସବୁ ଘରଯାକ ଖୋଜି ବୁଲନ୍ତି । ପେଡ଼ରା ଅବା ସିନ୍ଦୂକରେ ରଖିଥିବା ଖଣ୍ଡିଏ ଲୁଗା ସକାଶେ, ପେଡ଼ରା ଅବା ସିନ୍ଦୂକର ସମସ୍ତ ଲୁଗା ନ କାଢ଼ି ଖୋଜିଲେ ଲୁଗା ପାଆନ୍ତି ନାହିଁ । ଏହି ଶ୍ରେଣୀର ଗୃହିଣୀମାନେ ହାଣ୍ଡି ରଖିଥିବା ସ୍ଥାନରେ ଠୋକାଇ, ଠୋକାଇ ରଖିବା ସ୍ଥାନରେ ପିଢ଼ା, ଲୁଗା ରଖିବା ସ୍ଥାନରେ ମଶିଣା, ଲୁଣପାତ୍ରରେ ତେଲ, ଡାଲିହାଣ୍ଡିରେ ଚାଉଳ, ଚାଉଳହାଣ୍ଡିରେ ପରିବା, ମସଲା ରଖିବା ପାତ୍ରରେ ଲୁଣ ପ୍ରଭୃତି ବିଶୃଙ୍ଖଳଭାବରେ ରଖି ପଛକୁ ମହାହରବର ହୁଅନ୍ତି । ମାତ୍ର ରାମ-ଦାସଙ୍କ ଘରେ ଏପରି ଅନିୟମ ଦେଖିବ ନାହିଁ । ତାଙ୍କର ଘର, ଅଗଣା, ହାଣ୍ଡିଶାଳ, ଗୁହାଳ ପ୍ରଭୃତି ସର୍ବସ୍ଥାନ ପରିଷ୍କାର ଓ ଶୃଙ୍ଖଳା-ମୟ ଦେଖିବ । ତାଙ୍କ ସ୍ତ୍ରୀ ଯେଉଁ ଦ୍ରବ୍ୟ ଯେଉଁ ସ୍ଥାନରେ ରଖିବା ଉଚିତ ତାହାକୁ ସେହି ସ୍ଥାନରେ ରଖନ୍ତି । କୌଣସି ଗୋଟିଏ ସାମାନ୍ୟ ପଦାର୍ଥ ଆବଶ୍ୟକ ହେଲେ, ତାହାଙ୍କ ଘରୁ ମିଳଇ, ସେଥି ସକାଶେ ବଜାରକୁ ଦଉଡ଼ି ଯିବାକୁ ହୁଏ ନାହିଁ ।

ରାମଦାସଙ୍କ ସ୍ତ୍ରୀ ଶ୍ୱଶୁର ଶାଶୁଙ୍କର ଯେପରି ସେବା କରନ୍ତି ସେମାନଙ୍କ

କଲାଣ୍ଡ ଥିଲେ.ସେ ସେପରି ସେବା କରନ୍ତା କି ନାହିଁ ସନ୍ଦେହ । ସେ-ମାନେ ମଧ୍ଯ ବୋହୂଙ୍କୁ ଆପଣା କନ୍ୟା ତୁଲ୍ୟ ସ୍ନେହ କରନ୍ତି । ତାଙ୍କର ସ୍ୱାମିଭକ୍ତି ଦେଖିଲେ ତୁମ୍ଭେମାନେ ଆଶ୍ଚର୍ଯ୍ୟ ହୋଇଯିବ । ରାମଦାସଙ୍କ ପିଲାମାନେ ଆପଣା ମାତାଙ୍କଠାରୁ ଏପରି ଶିକ୍ଷା ପାଇଅଛନ୍ତି ଯେ ସେମାନେ ଭ୍ରମରେ ସୁଦ୍ଧା ମିଥ୍ୟା କହନ୍ତି ନାହିଁ, କି କାହାରଙ୍କ କଟୁକ୍ତି କରନ୍ତି ନାହିଁ । ମାତାଙ୍କ ଶିକ୍ଷାଗୁଣରୁ ରାମଦାସଙ୍କ ପିଲାମାନେ ସବୁବେଳେ ପରିଷ୍କାର ପରିଚ୍ଛନ୍ନ ଥାନ୍ତି । ଏହି ଅଳ୍ପବୟସରୁ ସେମାନେ ସତ୍ୟନିଷ୍ଠ, ସୁଶୀଲ, ଓ ବିନୟୀ ହୋଇଅଛନ୍ତି । କୌଣସି ବନ୍ଧୁବାନ୍ଧବ ରାମଦାସଙ୍କ ଗୃହକୁ ଆସିଲେ ତାଙ୍କର ସ୍ତ୍ରୀ ସେମାନଙ୍କ ସକାଶେ ନାନା ପ୍ରକାର ମିଷ୍ଟାନ୍ନ ନିଜେ ପ୍ରସ୍ତୁତ କରନ୍ତି । ସେଥି ସକାଶେ ଗୁଡ଼ିଆଘରକୁ ଯିବାକୁ ହୁଏ ନାହିଁ । କେହି ଭିକ୍ଷା କରିବାକୁ ଆସିଲେ ରାମଦାସଙ୍କ ଘରୁ ଲେଉଟି ଯାଏ ନାହିଁ । ଗ୍ରାମର ସମସ୍ତେ ରାମଦାସଙ୍କ ସ୍ତ୍ରୀଙ୍କୁ ଅତ୍ୟନ୍ତ ସ୍ନେହ କରନ୍ତି । ରାମଦାସଙ୍କ କନ୍ୟାର ବିବାହ ସମୟରେ ଟଙ୍କା ଅଭାବ ହେବାରୁ ରାମଦାସ ଏକଶତ ଟଙ୍କା ଋଣ କରିବାକୁ ଉଦ୍ୟତ ହେଲେ । ମାତ୍ର ତାଙ୍କର ସ୍ତ୍ରୀ ସ୍ୱାମିଙ୍କୁ ଋଣ କରିବାକୁ ନିଷେଧ କରି, ଏକଶତ ଟଙ୍କା ଦେଲେ । ଏତେ ଟଙ୍କା କେଉଁଠାରୁ ଆସିଲା, ରାମଦାସ ସ୍ତ୍ରୀଙ୍କ ପଚାରିବାରୁ ସେ କହିଲେ ଯେ, ପ୍ରତ୍ୟହ ଖରଚରୁ ଯୋଡ଼ାଏ, ତିନିଟା କରି ପଇସା ବଞ୍ଚାଇ ସେ ଏହି କେତେ ବର୍ଷରେ ପ୍ରାୟ ତିନିଶତ ଟଙ୍କା ସଞ୍ଚୟ କରିଅଛନ୍ତି ।

ଆଜି ଏତିକି ହେଉ, ଚାଲ ଯିବା ।



## ନବମ ସନ୍ଧ୍ୟା ।

# କେତେକଗୁଡ଼ିଏ ପକ୍ଷିଙ୍କ ବିବରଣ ।

ଅଈ—ଆଜି ତୁମ୍ଭମାନଙ୍କୁ କେତେଗୁଡ଼ିଏ ପକ୍ଷିଙ୍କ କଥା କହିବି ।

ଲୀଳାବତୀ—ଅଈ, ପକ୍ଷିମାନଙ୍କ ମଧ୍ୟରେ ସବୁଠାରୁ ବଡ଼ କିଏ ?

ଅଈ—ପଶୁମାନଙ୍କ ମଧ୍ୟରେ ହାତୀ ଯେପରି ବୃହତ୍ତମ ପକ୍ଷିମାନଙ୍କ ମଧ୍ୟରେ ଓଟପକ୍ଷୀ ସେହିପରି ବୃହତ୍ତମ ଅଟେ । ଓଟର ବେକ ପରି, ଏହାର ବେକ ଲମ୍ବ ବୋଲି ଏହାକୁ ଓଟପକ୍ଷୀ କହନ୍ତି । ଆରବ ଓ ଆଫ୍ରିକା ଓଟ-ପକ୍ଷିର ଜନ୍ମସ୍ଥାନ । ଏମାନେ ଛଅ ସାତହାତ ପର୍ଯ୍ୟନ୍ତ ଉଚ୍ଚ ହୁଅନ୍ତି ଏବଂ ଦଳବଦ୍ଧ ହୋଇ ବାସ କରନ୍ତି । ଓଟପକ୍ଷିର ପକ୍ଷ ଅତ୍ୟନ୍ତ କ୍ଷୁଦ୍ର ହେବୁ ଏମାନେ ଉଡ଼ି ପାରନ୍ତି ନାହିଁ, ମାତ୍ର ଅତ୍ୟନ୍ତ ବେଗରେ ଦଉଡ଼ି ପାରନ୍ତି ।



ଚିତ୍ରରେ ଦେଖ ଗୋଟାଏ ପୋଷା ଓଟପକ୍ଷୀ ଗୋଟିଏ ପିଲାକୁ ଘେନି କେମନ୍ତ ବେଗରେ ଦଉଡ଼ି ଅଛି । ଇଉରୋପର ସ୍ତ୍ରୀମାନେ ଓଟପକ୍ଷିର ପର ଅଧିକ ମୂଲ୍ୟରେ କ୍ରୟ କରି ଟୋପିରେ ବ୍ୟବହାର କରନ୍ତି । ଅଫ୍ରିକାରେ କେହି୨ ଓଟପକ୍ଷୀ ପାଳି ବ୍ୟବସାୟ କରନ୍ତି । ଅଫ୍ରିକାର ଅସଭ୍ୟଲୋକେ ଓଟପକ୍ଷିର ଅଣ୍ଡାକୁ ଛିଦ୍ର କରି ଜଳପାତ୍ରସ୍ୱରୂପେ ବ୍ୟବହାର କରନ୍ତି । ଗୋଟିଏ୨ ଅଣ୍ଡାରେ ସେରେ ଜଳ ଧରି ପାରେ ।

ଇଗଲକୁ ପକ୍ଷିରାଜ କହନ୍ତି । ତିବ୍ବତ ଦେଶରେ, ଇଉରୋପରେ, ଏବଂ ଅମେରିକାରେ ଇଗଲ ଅଛନ୍ତି । ଏମାନେ ବଡ଼୨ ହରିଣକୁ ମାରି ପାରନ୍ତି । ଠେକୁଅ, ସାନ ବାଛୁରୀ, ମେଣ୍ଢା ପ୍ରଭୃତିକୁ ଇଗଲ



ଘେନି ଯାଏ । ପାଞ୍ଚ ଛଅ ବର୍ଷର ମନୁଷ୍ୟପିଲାକୁ ମଧ୍ୟ ଏମାନେ ଘେନିଯାନ୍ତି । ଇଗଲମାନେ ପର୍ବତଶିଖର ଉପରେ ବସା କରିଣ

କରନ୍ତି । ଏମାନଙ୍କ ଦୃଷ୍ଟିଶକ୍ତି ଅତ୍ୟନ୍ତ ପ୍ରଖର । ଏମାନେ ବହୁଦୂରରୁ ଆପଣାର ଶିକାର ଦେଖି ପାରନ୍ତି ।



ଇଗଲ ପର ଛଞ୍ଚାଣ ଶିକାରୀ ପକ୍ଷୀ ଅଟେ । ନାନା ଶ୍ରେଣୀର ଛଞ୍ଚାଣ ଅଛନ୍ତି । ମନୁଷ୍ୟମାନେ କୁକୁର ଏବଂ ଚିତାବାଘ ପାଳି ଯେପରି ପଶୁ ଶିକାର କରନ୍ତି, ଛଞ୍ଚାଣ ପାଳି ସେହିପରି ପକ୍ଷୀ ଶିକାର କରନ୍ତି । ପ୍ରାୟ ସବୁ ଦେଶରେ ଛଞ୍ଚାଣ ଅଛନ୍ତି । ଛଞ୍ଚାଣମାନେ ପକ୍ଷୀ ବ୍ୟତୀତ, ଠେକୁଅ, ମୂଷା, ବେଙ୍ଗ, ସାନ ୨ ସାପ ପ୍ରଭୃତି ମାରି ଖାନ୍ତି ।



ଅମ୍ଭ ଦେଶରେ ବଡ଼ିଅକାଙ୍କ ଅବା ହାଡ଼ଗିଳା ବୃହତ୍ତମ ପକ୍ଷୀ ଅଟେ । ଏମାନେ ଗୋଧି, ସାପ, ମୂଷା, ବେଙ୍ଗ, ଯାମୁକା, ମଛ ପ୍ରଭୃତି ଖାନ୍ତି । ଏମାନେ ଗୋଟାଏ ଗୋଡ଼ରେ ବହୁକ୍ଷଣ ପର୍ଯ୍ୟନ୍ତ ଠିଆ ହୋଇ ରହି ପାରନ୍ତି । ବଡ଼ିଅକାଙ୍କର ଗଳାରେ ଗୋଟାଏ ଥଳୀ ଅଛି । ଏମାନେ ଯାହା ଖାନ୍ତି ତାହା ପ୍ରଥମ ଏହି ଥଳୀରେ ପଡ଼ି ସିଦ୍ଧ ହେଲା ପରି ହୋଇଯାଏ; ତହିଁ ଉତ୍ତାରୁ ପେଟ ମଧ୍ୟକୁ ଯାଇ ଜୀର୍ଣ୍ଣ ହୁଏ ।

ଆଫ୍ରିକା ମହାଦେଶରେ ଏକଜାତିର ପକ୍ଷୀ ଅଛନ୍ତି ସେମାନଙ୍କୁ କରଣପକ୍ଷୀ କହନ୍ତି । ଏମାନେ ଗୃହ ପାଞ୍ଚ ହାତ ଦୀର୍ଘର ସାପକୁ ଯୁଦ୍ଧ କରି ମାରି ଖାନ୍ତି । ଗୋଖୁର ପରି ବିଷାକ୍ତ ସାପକୁ ଏମାନେ



ଅନ୍ୟାସ୍ତ୍ରେ ମାର ପାରନ୍ତି । ଏମାନଙ୍କ ପର ଅନ୍ୟ କୌଣସି ପକ୍ଷୀ ସାପ ସଙ୍ଗେ ଯୁଦ୍ଧ କରନ୍ତି ନାହିଁ । କରଣମାନେ ଯେପର କାନରେ କଲମ ଖୋସି ରଖିଥାନ୍ତି, ସେହିପର ଏହି ପକ୍ଷୀ ମୁଣ୍ଡରେ କେତେଗୁଡ଼ିଏ ପର ଥିବାରୁ, ଏମାନଙ୍କୁ କରଣପକ୍ଷୀ କହନ୍ତି । ଏମାନଙ୍କ ପକ୍ଷ ଏପର ଶକ୍ତ ଯେ ଏମାନେ ପକ୍ଷ ଅଘାତରେ ସାପର ମେରୁଦଣ୍ଡ ଏବଂ କଇଁଛର ପୃଷ୍ଠ ଅବରଣ ଭାଙ୍ଗି ପକାନ୍ତି । ଚିତ୍ରରେ ଦେଖ, ଗୋଟିଏ କରଣପକ୍ଷୀ ଗୋଟାଏ ସାପକୁ କେମନ୍ତେ ଗୋଡ଼ରେ ମାଡ଼ି ଧରି ମାରୁଅଛି ।

ଦକ୍ଷିଣମହାସମୁଦ୍ରର ଉପକୂଳରେ ଏକଜାତୀୟ ପକ୍ଷୀ ଅଛନ୍ତି, ସେମାନଙ୍କୁ ଦସ୍ୟୁପକ୍ଷୀ କହନ୍ତି । ଏମାନେ ଅନ୍ୟ ପକ୍ଷୀ ବସାରୁ ପକ୍ଷିଶାବକମାନଙ୍କୁ ଧର ଖାନ୍ତି । ଏମାନଙ୍କ ଦୃଷ୍ଟିଶକ୍ତି ଅତ୍ୟନ୍ତ ପ୍ରଖର ।



ଏମାନେ ଅଦୃଶ୍ୟାକାଶରୁ ବିଦ୍ୟୁତବେଗରେ ପତିତ ହୋଇ ସମୁଦ୍ରବକ୍ଷରୁ ଭାସମାନ ମତ୍ସ୍ୟ ନେଇଯାନ୍ତି । ସମୁଦ୍ରରେ ଝଟିକା ଉପସ୍ଥିତ

ହେଲେ, ଏମାନେ ସୁଦୂର ଆକାଶପ୍ରଦେଶକୁ ଗମନ କରି ଝଟିକା ପ୍ରଦେ-ଶର ସୀମା ଅତିକ୍ରମ କରନ୍ତି ।





ମୟୂର, କୁକୁଡ଼ା, ତିତିର ପ୍ରଭୃତିଙ୍କୁ ଘର୍ଷକପଦୀ ପକ୍ଷୀ କହନ୍ତି । ଘର୍ଷକପଦୀ ପକ୍ଷିମାନେ ମାଂସ ଓ ଉଦ୍ଭିଦ ଉଭୟିହାରୀ ଅଟନ୍ତି । ମୟୂର ପରି ସୁନ୍ଦର ପକ୍ଷୀ ପୃଥିବୀରେ ଅଧିକ ନାହାନ୍ତି । ମୟୂର-ମାନେ କ୍ଷୁଦ୍ର ସାପମାନଙ୍କୁ ଧରି ଖାନ୍ତି । ଜଣେ ସାହେବ ଭାରତବର୍ଷରୁ କେତେଗୁଡ଼ିଏ ମୟୂର ନେଇ ଯାଇ ଇଉରୋପରେ ଛାଡ଼ି ଦେଇଥିଲେ। ମାତ୍ର ଇଉରୋପର ଶୀତଳ ଜଳବାୟୁ ଗୁଣରୁ, ଉକ୍ତ ମୟୂରମାନଙ୍କ ଶାବକମାନଙ୍କ ପକ୍ଷ ଶ୍ୱେତବର୍ଣ୍ଣ ହୋଇ ଗଲା । ଏଣୁ ଇଉରୋପର କେତେକ ସ୍ଥାନରେ ଶ୍ୱେତମୟୂର ଦେଖାଯାନ୍ତି ।

ଦକ୍ଷିଣ ଆମେରିକା ଏବଂ ପ୍ରଶାନ୍ତ-ମହାସାଗରର କୌଣସି ଦ୍ୱୀପରେ ଏକଜାତୀୟ ଅତ୍ୟନ୍ତ ସୁନ୍ଦର ପକ୍ଷୀ ଅଛନ୍ତି ସେମାନଙ୍କୁ ନନ୍ଦନ ପକ୍ଷୀ ଅବା ସ୍ୱର୍ଗୀୟ ପକ୍ଷୀ କହନ୍ତି । ଏମାନେ ନିବିଡ଼ ଅରଣ୍ୟର ଅତ୍ୟନ୍ତ ନିର୍ଜ୍ଜନ ପ୍ରଦେଶରେ ବହୁସଂଖ୍ୟାରେ ଦଳବଦ୍ଧ ହୋଇ ବାସ କରନ୍ତି । ପାର୍ଶ୍ୱରେ ଦେଖ ଗୋଟିଏ



କାନନପକ୍ଷିର ଚିତ୍ର ପ୍ରଦତ୍ତ ହୋଇଅଛି । ଇଉରୋପର ସଙ୍ଗତି-ସମ୍ପନ୍ନାରମଣୀମାନେ ସ୍ୱୀୟ୍ ଅଙ୍ଗର ଶୋଭାବର୍ଦ୍ଧନ ନିମନ୍ତେ ହେମମୂଲ୍ୟ-ରେ ଏହି ପକ୍ଷିର୍ ପର କ୍ରୟ୍ କରି ପରିଧାନ କରନ୍ତି ।



ଏଦେଶରେ ଚନ୍ଦନା, କାକତୁଆ, ସାରି, ଗ୍ରାମ-ଶାଳ ପ୍ରଭୃତି ପାଳି ସେମାନଙ୍କୁ କଥା କହିବାକୁ ଶିକ୍ଷା ଦିଅନ୍ତି । ଅମେରିକାରେ ଏକ ଜାତିର ପକ୍ଷୀ ଅଛନ୍ତି, ସେମାନଙ୍କୁ ହରବୋଲା କହନ୍ତି । ନିମ୍ନରେ ହରବୋଲା ପକ୍ଷୀର୍ ଚିତ୍ର ପ୍ରଦତ୍ତ ହୋଇଅଛି । ଏମାନଙ୍କ ଆକୃତି କାଉଠାରୁ ବୃହତ୍ତର ହୁଏ ନାହିଁ । ଏମାନେ ଯେ କୌଣସି ପଶୁ ଅବା ପକ୍ଷିର୍ ଶବ୍ଦ ଶୁଣନ୍ତି ଅବିକଳ ତାହା ଅନୁକରଣ



କରନ୍ତି । ଥରେ ଗୋଟାଏ ବଡ଼ ଗଛରେ କେତେ-ଗୁଡ଼ିଏ ବାନର ବସିଥିଲେ । ହରବୋଲା ସେହି ଗଛରୁ ଉଡ଼ି ଆସି ବାଘ ପରି ଗର୍ଜ୍ଜନ କଲା କ୍ଷଣି, ବାନରମାନେ ଭୟ୍‌ରେ ଅସ୍ଥିର ହୋଇ ଇତସ୍ତତଃ ପଳାଇ ଗଲେ ।



ତୁମ୍ଭେମାନେ କୋଚଲାଖାଇ ଦେଖିଥିବ । ଏକଜାତିର କୋଚଲାଖାଇ ଅଛନ୍ତି ସେମାନଙ୍କ ଥଣ୍ଟ ପ୍ରାୟ୍ ଏକ ହାତ ଦୀର୍ଘ ହୁଏ । ଦକ୍ଷିଣ ଅମେରିକାରେ ଏକଜାତିର ପକ୍ଷୀ ଅଛନ୍ତି ସେମାନଙ୍କୁ ଛତ୍ରପକ୍ଷୀ କହନ୍ତି । ଏମାନଙ୍କ ମୁଣ୍ଡ ଉପରେ କେତେଗୁଡ଼ିଏ କ୍ଷୁଦ୍ର ପକ୍ଷ

ଥାଏ, ଏମାନେ ଇଚ୍ଛାନୁସାରେ ସେହି ପକ୍ଷମାନଙ୍କୁ ଛତ୍ରପରି ଅକୁଞ୍ଚିତ ଅବା ବିସ୍ତୃତ କରି ପାରନ୍ତି ।



ପେଚା ପ୍ରଭୃତି କେତେଗୁଡ଼ିଏ ପକ୍ଷୀ ରାତ୍ରିଚର ଅଟନ୍ତି । ଏମାନେ ମାଂସାଶୀ ପକ୍ଷୀ। ପେଚାମାନେ ମୂଷା, ବେଙ୍ଗ, ଚେମଣି, କ୍ଷୁଦ୍ର ପକ୍ଷୀ ପ୍ରଭୃତିଙ୍କୁ ମାରି ଖା'ନ୍ତି । କେହି୨ ପେଚାର ଡାକକୁ ଅମଙ୍ଗଳସୂଚକ ଜ୍ଞାନ କରନ୍ତି । ମାତ୍ର ଏହା ସେମାନଙ୍କର ସମ୍ପୂର୍ଣ୍ଣ ଭ୍ରମ ଅଟେ ।



ପଶୁମାନଙ୍କ ମଧ୍ୟରେ ମୂଷା ଯେପରି କ୍ଷୁଦ୍ରତମ ପଶୁ ପକ୍ଷିମାନଙ୍କ ମଧ୍ୟରେ ମଧୁପାୟୀ ପକ୍ଷୀ ସେହିପରି କ୍ଷୁଦ୍ରତମ ପକ୍ଷୀ। ଅମେରିକାରେ ନାନା-ଜାତିର ମଧୁପାୟୀ ପକ୍ଷୀ ଅଛନ୍ତି । କୌଣସି ମଧୁ-ପାୟୀ ପକ୍ଷିର ଅକୃତି ବରୁଡ଼ି ପରି, କୌଣସି ମଧୁପାୟୀ ପକ୍ଷିର ଅକୃତି ବରୁଡ଼ିଠାରୁ ଅଳ୍ପ ବୃହତ୍ତର ହୁଏ । ଏମା-ନେ ଋତୁପରିବର୍ତ୍ତନ ସଙ୍ଗେ ଏକ ପ୍ରଦେଶରୁ ସୁଦୂର ପ୍ରଦେଶାନ୍ତରକୁ ଦଳବଦ୍ଧ ହୋଇ ଗମନ କରନ୍ତି। ପକ୍ଷିଜାତିଙ୍କ ମଧ୍ୟରେ ଏମାନେ ସୁନ୍ଦ-ରତମ ପକ୍ଷୀ ଅଟନ୍ତି । ମଧୁପାୟୀ ପକ୍ଷୀ ବିଦ୍ୟୁତ୍ ବେଗରେ ଏକ ସ୍ଥାନରୁ ସ୍ଥାନାନ୍ତରକୁ ଉଡ଼ିଯାନ୍ତି । ଏମାନେ ଅତ୍ୟନ୍ତ ସାହସୀ। ଏମାନେ ପ୍ରାଣପଣେ ଶାବକମାନଙ୍କୁ ରକ୍ଷା କରନ୍ତି ।

———୦○୦———

ଦଶମ ସନ୍ଧ୍ୟା ।

# ଗୃହ ଏବଂ ଗୃହଦ୍ରବ୍ୟ ।

---

ଆଈ—ଆଜି ତୁମ୍ଭମାନଙ୍କୁ ଗୃହ ଏବଂ ଗୃହର ଦ୍ରବ୍ୟାଦି ସମ୍ବନ୍ଧରେ କେତେକ କଥା କହିବୁ । ଗୃହ ଏପରି ହେବାର ଉଚିତ ଯେମନ୍ତ କି ତାହା ମଧ୍ୟ ଦେଇ ପବନ ଯାଇ ଆସି ପାରେ । ଗୃହକୁ ସର୍ବଦା ପରିଷ୍କାର ରଖିବ । ଅପରିଷ୍କାର ଗୃହ ଦେଖିବାକୁ ଅସୁନ୍ଦର ଏବଂ ସ୍ୱାସ୍ଥ୍ୟପକ୍ଷରେ ମଧ୍ୟ ଅନିଷ୍ଟକର ହୁଏ । ଘରତଳ, ପିଣ୍ଡା ଓ ଅଗଣା ପ୍ରଭୃତି ଦୁଇ ଓଳ ଓଳେଇ ଦେବ । ରୋଷେଇଘର ଓ ଭୋଜନସ୍ଥାନ ପ୍ରତ୍ୟହ ଲିପି ଦେବ । ଅନ୍ୟାନ୍ୟ ଘର ୨।୩ ଦିନ ଅନ୍ତରରେ ଥରେ ଲିପି ଦେଲେ ଚଳେ । ପକ୍କା ଘର ହେଲେ ଧୋଇ ଦେବ । ସମସ୍ତେ ଘରତଳ ଓଳେଇ ଦେଇ ମନେ କରନ୍ତି ଘର ପରିଷ୍କାର ହେଲା । ଘରକାନ୍ଥରେ କେତେ ବର୍ଷର ଧୂଳି, ଅଳନ୍ଧୁ, ବୁଢ଼ିଆଣୀଦଉଡ଼ି ପ୍ରଭୃତି ଲାଗିଥାଏ, ପରିଷ୍କାର କରନ୍ତି ନାହିଁ । ଦୁଇ ତିନି ଦିନ ଅନ୍ତରରେ ଥରେ ଘରକାନ୍ଥ, ଛାତ ଝାଡ଼ିଦେବା ଉଚିତ । ଏପରି ଅନେକ ଗୃହିଣୀ ଅଛନ୍ତି ଯେ ଥରେ ଅଗଣା ପ୍ରଭୃତି ପରିଷ୍କାର କଲା ପରେ ଯେବେ ଦେଖନ୍ତି ଯେ, ପିଲାମାନେ ଖେଳିବା ଲାଗି କାଗଜ, ପତ୍ର, ଇଟା, କନା ପ୍ରଭୃତି ଅଗଣାରେ ପକାଇ-ଅଛନ୍ତି, ପୁଣି ଅଗଣା ପରିଷ୍କାରର ସମୟ ନ ହେବା ପର୍ଯ୍ୟନ୍ତ ତାହା ପରିଷ୍କାର କରିବାର ଆବଶ୍ୟକ ବୋଧ କରନ୍ତି ନାହିଁ । ସେହିପରି ଅପରିଷ୍କାର ହେଲେ ତାହା ସେହିକ୍ଷଣି ପରିଷ୍କାର କରି ଦେବ । ପିଲା-ମାନେ ମୁହଁ ଧୋଇବାକୁ ଆଣି ଲୋଟା ଅଗଣାରେ, ଜଳ ପିଇସାରି ଗିଲାସ ପିଣ୍ଡାରେ, ଲୁଗା ଛାଡ଼ି ଘରମଝିରେ ପକାଇ ରଖିଲେ ସେ

ସବୁକୁ ସେହିକ୍ଷଣି ଯଥାସ୍ଥାନରେ ରଖିବ । ପିଲାମାନେ ଯେଉଁ ଦ୍ରବ୍ୟ ଯେଉଁ ସ୍ଥାନରୁ ଆଣନ୍ତି ସେମାନଙ୍କୁ ପୁଣି ସେହି ଦ୍ରବ୍ୟ ସେହି ସ୍ଥାନରେ ରଖିବାକୁ ଶିକ୍ଷା ଦେଲେ, କୌଣସି ବିଶୃଙ୍ଖଳା ହୁଏ ନାହିଁ ।

ଏପରି ଅନେକ ଗୃହିଣୀ ଅଛନ୍ତି ଯେ ସେମାନେ ମନେ କରନ୍ତି ଗନ୍ଧର୍ଜି ଓ ମଳମୂତ୍ରଦ୍ୱାରା ଗୃହ ଅପରିଷ୍କାର ହୁଏ, ସେଥିରୁ ଗୃହକୁ ପରିଷ୍କାର ରଖିଲେ ଗୃହ ପରିଷ୍କାର ହେଲା । ସେପରି ମନେ ନ କରି ଯାହା ଦେଖିବାକୁ ଅସୁନ୍ଦର, ତାହାକୁ ଅପରିଷ୍କାର ବୋଲି ମନେ କରିବା ଉଚିତ । ସେହିପରି ମନେ କରି କାର୍ଯ୍ୟ କଲେ ଗୃହ ସର୍ବଦା ପରିଷ୍କାର ରହେ । ଯେଉଁ ଦ୍ରବ୍ୟ ଯେଉଁ ସ୍ଥାନରେ ରଖିଲେ ସୁନ୍ଦର ଦିଶିବ ତାହାକୁ ସେହି ସ୍ଥାନରେ ରଖିବ । କଂସା ଓ ପିତଳ ବାସନ ମଧ୍ୟରେ ଗୋଟାଏ କି ଯୋଡ଼ାଏ ମାଟି ହାଣ୍ଡି, କମ୍ବା ଭଙ୍ଗା ଟୋକାଇ ରଖିଲେ ସୁନ୍ଦର ଦିଶିବ ନାହିଁ । ଯେଉଁ ଅଲଗଣିରେ ଭଲ ଭଲ ଲୁଗା ଅଛି ସେହି ଅଲଗଣିରେ ଖଣ୍ଡିଏ ମଇଳା ଛିଣ୍ଡା ଲୁଗା ରଖିଲେ ସୁନ୍ଦର ଦିଶିବ ନାହିଁ । ଯେଉଁ ସ୍ଥାନରେ କାଚର ବୋତଲ ଗ୍ଲାସ ପ୍ରଭୃତି ଅଛି ସେହି ସ୍ଥାନରେ ଶିଶି କି ପଥୁରି ରଖିଲେ ସୁନ୍ଦର ଦିଶିବ ନାହିଁ । କେଉଁ ସ୍ଥାନରେ କେଉଁ ପଦାର୍ଥ ରଖିଲେ ଭଲ ଦିଶିବ ତାହା ବିବେଚନା କରି ଦେଖିବ ଏବଂ ଶିକ୍ଷା କରିବ । ଦ୍ରବ୍ୟମାନ ଯଥାସ୍ଥାନରେ ରଖିଲେ କାର୍ଯ୍ୟର ସୁବିଧା ହୁଏ ଏବଂ ଗୃହ ସୁନ୍ଦର ଦିଶେ । ଗୃହ ସୁନ୍ଦର ହେଲେ ମନ ପ୍ରଫୁଲ୍ଲ ହୁଏ ।

କୌଣସି କୌଣସି ଘରେ ଦେଖିବ ଦୀପ, ଦୀପରୁଖା, ଓ ତେଲଭଣ୍ଡି ଉପରେ ଅଙ୍ଗୁଳିଏ ବହଳରେ ମଳି, ତେଲକାଣ୍ଟି ବସିଅଛି । ସେଥିରୁ ତେଲ ଗଡ଼ି ଘର ଏପରି ଅପରିଷ୍କାର ହେଉଅଛି ଯେ ଦେଖିଲାକ୍ଷଣି ମନରେ ଘୃଣା ହୁଏ । ସେହି ପଦାର୍ଥମାନ ପ୍ରତ୍ୟହ ପରିଷ୍କାର କରୁ-

ଥିଲେ ଘର ସେପରି ଅପରିଷ୍କାର ହୁଅନ୍ତା ନାହିଁ । ଅନେକେ ଆଳସ୍ୟ ହେତୁ ଏହି ସାମାନ୍ୟ କାର୍ଯ୍ୟ କରନ୍ତି ନାହିଁ । କେହି୨ ପାନ ଖୁଙ୍କିବା ବେଳେ ଅଙ୍ଗୁଳିରେ ଲାଗିଥିବା ଚୂନ କାନ୍ଥ, କବାଟ, ଖଟ, ଅଲମାରି, ଅବା ସିନ୍ଦୁକରେ ପୋଛି ଦିଅନ୍ତି । ସେମାନେ ଯେଉଁ ସ୍ଥାନରେ ବସି ପାନ ଖୁଙ୍କନ୍ତି, ସେହି ସ୍ଥାନରେ ଯେଉଁ ପଦାର୍ଥ ଥାଏ ସେଥିରେ ଚୂନ ଲଗାଇ ଅପରିଷ୍କାର କରନ୍ତି । ପାନବଟା ସଙ୍ଗେ ଖଣ୍ଡିଏ କନା ରଖି ହାତ ପୋଛିବାର ଅବଶ୍ୟକ ହେଲେ ସେହି କନାରେ ପୋଛିଲେ ଗୃହର ଅନ୍ୟ ପଦାର୍ଥ ଅପରିଷ୍କାର ହେବ ନାହିଁ । କାହାରି୨ ଏପରି ମନ୍ଦ ଅଭ୍ୟାସ ଅଛି ଯେ ସେମାନେ ଆଳସ୍ୟ ହେତୁ ଘର ବାହାରକୁ ନ ଆସି ଘର କୋଣରେ କମ୍ବା କାନ୍ଥରେ ଛେପ, ପାନପିକ ପକାଇ ଅତ୍ୟନ୍ତ ଅପରିଷ୍କାର କରନ୍ତି । ଏଥିରେ ଘର ଅପରିଷ୍କାର ହୁଏ ଏବଂ ବାୟୁ ଦୂଷିତ ହୋଇ ସ୍ୱାସ୍ଥ୍ୟ ହାନି କରେ । ଏହି କାରଣରୁ ଅନେକ ସମୟରେ ପିମ୍ପୁଡ଼ି ମାଛି ପ୍ରଭୃତି ଘର ମଧ୍ୟକୁ ଆସି ଉପଦ୍ରବ କରନ୍ତି । ଅନେକ ସ୍ତ୍ରୀ ପିଠିରୁ ଲୁଗା କାଢି ଦେଇ କାନ୍ଥକୁ ଆଉଜି ଗୋଡ଼ ମେଲାଇ ବସନ୍ତି । ସେହିପରି କଲେ କାନ୍ଥର ନିମ୍ନ ଅଂଶ ମସିଆ ହୋଇଯାଏ । କାନ୍ଥର ଊର୍ଦ୍ଧ୍ୱାଂଶ ପରିଷ୍କାର ନିମ୍ନାଂଶ ଅପରିଷ୍କାର ହେଲେ ଅତ୍ୟନ୍ତ ଅସୁନ୍ଦର ଦିଶେ । ମାତ୍ର ପିଠିରେ ଲୁଗା ଦେଇ ବସିଲେ ସେପରି ହୁଏ ନାହିଁ । କୌଣସି୨ ସ୍ତ୍ରୀ ପିତଳପିଲିସଜ ଅଭାବରେ ଠଣାରେ ଦୀପ ରଖି ଗୃହକାର୍ଯ୍ୟ କରନ୍ତି । ସେହିପରି କଲେ ଠଣାର ଊର୍ଦ୍ଧ୍ୱାଂଶ କାନ୍ଥରେ କଳା ପଡ଼ି ଏବଂ ନିମ୍ନାଂଶରେ କ୍ରମଶଃ ତେଲ ବହି ଯାଇ ଅତ୍ୟନ୍ତ ଅସୁନ୍ଦର ଦିଶେ । ଯୋଡ଼ାଏ ପଇସା ବ୍ୟୟ କରି ଗୋଟାଏ ଦୀପରୁଖା କିଣିଲେ ଏପରି ଅପରିଷ୍କାର ହେବାର ସମ୍ଭାବନା ନ ଥାଏ, ମାତ୍ର ତାହା କରନ୍ତି ନାହିଁ ।

ପ୍ରକୃତ ଗୃହିଣୀଙ୍କ ଘରେ ଲୁଗା ରଖିବା ସକାଶେ ଅଳଗଣି, ଅବସ୍ଥାନୁସାରେ କାହାର ଘରେ ସିନ୍ଦୁକ, ଆଲମାରି, କାହାରି ଘରେ ଅବା ପେଡ଼ିର ଅଭାବ ନ ଥାଏ । ପ୍ରକୃତ ଗୃହିଣୀଙ୍କ ଘରେ ଧାନ, ଚାଉଳ, ଡାଲି, ପରିବା, ଲୁଣ, ତେଲ, ଘିଅ, ମଶଲା ପ୍ରଭୃତି ରଖିବାର ପାତ୍ରର ଅଭାବ ନ ଥାଏ । ଶିଳ, ଶିଳପୁଅ, ଚକି, ହାମାମଦିସ୍ତା, ଦୁଇଖଣ୍ଡି ପନିକି, ବଣ୍ଟଣୀ, କୁରୁଣି, କଡା, ଦା, ଖଣତି, କୋଡି, କାଙ୍କି, ଦଉଡ଼ି, ଟୋକେଇ, ପାଚିଆ, କୁଲା, ଚାଲୁଣୀ, ହେଣ୍ଠା, ତାଟିଆ, ଚିମୁଟା, ଥାଳୀ, ଗଣ୍ଡା ଅଭାବରେ ମାଠିଆ, କଟେଇ, କରଛୁଲି, କେତେଗୁଡ଼ିଏ ଖାଲି ବୋତଲ, ଗୁଆକାତି, କୁଅବଣ୍ଟା, ଛୁଞ୍ଚି, ସୂତା, କତୁରୀ, ଛୁରୀ, ଝାଡ଼ୁ, ଖୁଣ୍ଟୁଣି, ପିଢ଼ା ପ୍ରଭୃତି ଦ୍ରବ୍ୟ ସାମାନ୍ୟ ହେଲେହେଁ ପ୍ରକୃତ ଗୃହିଣୀ ସଂଗ୍ରହ କରି ରଖନ୍ତି । ଭଲ ୨ ପୋଥି, କେତେକ ଔଷଧ ମଧ୍ୟ ସର୍ବଦା ଘରେ ରଖିଥିବା କର୍ତ୍ତବ୍ୟ । ପ୍ରକୃତ ଗୃହିଣୀଙ୍କ ଘରୁ ତେନ୍ତୁଳି, ଆମ୍ବୁଲ, ଅଚାର ପ୍ରଭୃତିର, ଏବଂ ସମୟବିଶେଷରେ ବ୍ୟବହାର ସକାଶେ ଗୁଡ଼, ଘିଅ, ନଡ଼ିଆ ପ୍ରଭୃତିର ଅଭାବ ଦେଖିବ ନାହିଁ । ପ୍ରକୃତ ଗୃହିଣୀ ବନ୍ଧୁବାନ୍ଧବ କିମ୍ବା ଭଦ୍ର ଅତିଥି ଆସିଲେ ସେମାନଙ୍କ ସକାଶେ ମଶିଣା, ଆସନ, ପିନ୍ଧିବା ଲୁଗା, ମଶାରି, ତକିଆ, ଭୋଜନ ଓ ଜଳପାତ୍ର ପ୍ରସ୍ତୁତ କରି ରଖିଥାନ୍ତି ।

ବର୍ଷାଦିନେ ଅନେକ ଗୃହସ୍ଥ ନାନାପ୍ରକାର ହରବରରେ ପଡ଼ନ୍ତି । କେହି ଚାଉଳ ସକାଶେ, କେହି କାଠ ସକାଶେ, କେହି ପରିବା ସକାଶେ, କେହି ସମୟରେ ଘରଛଉଣି କରି ନ ଥିବା ହେତୁ, କେହି ଅବା ଗୋରୁଙ୍କ ନଡ଼ା ପ୍ରଭୃତି ସଂଗ୍ରହ କରି ରଖି ନ ଥିବା ହେତୁ ବଡ଼ କଷ୍ଟଭୋଗ କରନ୍ତି । ମାତ୍ର ଗୃହିଣୀ ଯୋଗ୍ୟା ହେଲେ ଏହି ସବୁ ଅସୁବିଧାରେ ପଡ଼ିବାକୁ ହୁଏ ନାହିଁ ।

ସାମାନ୍ୟ ଦ୍ରବ୍ୟ ସଂଗ୍ରହ କରି ରଖିଥିଲେ ତାହା ସମୟରେ କପରି କାର୍ଯ୍ୟରେ ଆସେ, ସେଥିର ଗୋଟିଏ କାହାଣୀ କହୁଅଛୁ ଶୁଣ । ଏକ ରାଜାଙ୍କ ନଅର ନିକଟରେ ବୈରାଗୀଦାସ ବୋଲି ଜଣେ ଦରିଦ୍ର ଗୃହସ୍ଥ ଥିଲେ । ସେ ପ୍ରତ୍ୟହ ଯତ୍‌ସାମାନ୍ୟ ଯାହା ଉପାର୍ଜନ କରୁଥିଲେ ତାହା ଆଣି ଆପଣାର ଗୃହିଣୀଙ୍କଠାରେ ଦେଉଥିଲେ । ତାଙ୍କର ସ୍ତ୍ରୀ ପ୍ରକୃତ ଗୃହିଣୀ ଥିଲେ । ତାଙ୍କର ଗୃହିଣୀପଣିଆ ହେତୁ ବୈରାଗୀଦାସ ପରମସୁଖରେ ସଂସାରଯାତ୍ରା ନିର୍ବାହ କରୁଥିଲେ । କୌଣସି ଦ୍ରବ୍ୟ ଅତି ସାମାନ୍ୟ ହେଲେହେଁ ବୈରାଗିଙ୍କ ସ୍ତ୍ରୀ ଅତି ଯତ୍ନରେ ତାହା ସଞ୍ଚୟ କରି ରଖୁଥିଲେ । ତାଙ୍କୁ ଏହିପରି ସାମାନ୍ୟ ଦ୍ରବ୍ୟ ସଞ୍ଚୟ କରିବାକୁ ଦେଖି, ବୈରାଗୀ, ଦିନେ ପରିହାସ କରି କହିଲେ—"ଯେ କୌଣସି ଦ୍ରବ୍ୟ ସଞ୍ଚୟ କରି ରଖିଲେ କଅଣ କାର୍ଯ୍ୟରେ ଆସେ ?"

ବୈରାଗିଙ୍କ ସ୍ତ୍ରୀ କହିଲେ—"ପରମେଶ୍ୱର କୌଣସି ଦ୍ରବ୍ୟ ଅକାରଣ ସୃଷ୍ଟି କରି ନାହାନ୍ତି । ଆମ୍ଭେମାନେ ଯେଉଁ ଦ୍ରବ୍ୟର ବ୍ୟବହାର ଜାଣୁ ତାହାକୁ ଆଦର କରୁଁ, ମାତ୍ର ଯାହାର ବ୍ୟବହାର ନ ଜାଣୁ ତାହାକୁ ଅନାଦର କରୁଁ । ବର୍ତ୍ତମାନ କୌଣସି ଦ୍ରବ୍ୟ କାର୍ଯ୍ୟରେ ନ ଆସିଲା ବୋଲି ଭବିଷ୍ୟତରେ ତାହା କୌଣସି କାର୍ଯ୍ୟରେ ନ ଲାଗିବ ଏହା କେହି କହି ନ ପାରେ ।

ତହିଁ ପରଦିବସ ବୈରାଗୀ ଘରକୁ ଆସୁଁ ବାଟରେ ଗୋଟାଏ ସାପକୁ ଦେଖି, ମାରି ଘରକୁ ଘେନି ଆସି, ପରିହାସ କରି ସ୍ତ୍ରୀଙ୍କୁ କହିଲେ —"ଏହି ମଲା ସାପଟା କିଛି କାର୍ଯ୍ୟରେ ଆସି ପାରେ, ରଖିଥାଅ ।"

ତାହାଙ୍କ ସ୍ତ୍ରୀ କହିଲେ—"ପିଢ଼ା ଉପରକୁ ଫୋପାଡ଼ି ଦିଅ, ସମୟରେ କିଛି କାର୍ଯ୍ୟକୁ ଆସିଲେ, ଆସି ପାରେ ।" "ଅଚ୍ଛା ଦେଖାଯାଉ"—କହି ବୈରାଗୀ ମଲା ସାପକୁ ପିଢ଼ା ଉପରକୁ ଫୋପାଡ଼ି ଦେଲେ । ତାହାର

ଅଳ୍ପକ୍ଷଣ ଉତ୍ତାରୁ ଗୋଟାଏ ଚିଲ କଅଣ ଯେନ ଅସି, ପିଡ଼ା ଉପରେ ଥୋଇ, ମଲା ସାପକୁ ଯେନ ଉଡ଼ିଗଲା । ବୈରାଗୀ କୌତୁହଳପର-ବଶ ହୋଇ ପିଡ଼ା ଉପରକୁ ଯାଇ ଦେଖିଲେ ଅତିମୂଲ୍ୟବାନ୍ ମୁକ୍ତାହାର ଗୋଟିଏ ପଡ଼ିଅଛି ।

ଦୈବଘଟଣାକୁ ଦେଖ, ସେହି ସମୟରେ ରାଣୀ ଅପଣା କଣ୍ଠରୁ ମୁକ୍ତାହାର ପୋଖରୀଘାଟରେ କାଢି ରଖି ସ୍ନାନ କରୁଥିଲେ । ଚିଲ ତାହାକୁ ଖାଇବା ପଦାର୍ଥ ମନେ କରି ଯେନ ଯାଉଥିଲା । ବାଟରେ ଯାଉଁ୨ ପିଡ଼ା ଉପରେ ମଲା ସାପକୁ ଦେଖି, ହାରକୁ ରଖି, ସାପକୁ ଯେନ ଗଲା । ଚିଲ୍ ହାର ଯେନ ଯାଇଅଛି, ରାଜା ଅବଗତ ହୋଇ ଘୋଷଣା ଦେଲେ ଯେ, କେହି ହାର ଆଣି ଦେଲେ ଏକ ସହସ୍ର ଟଙ୍କା ପୁରସ୍କାର ପାଇବ । ବୈରାଗୀ ସେହି ପୁରସ୍କାର ପାଇ ତାହାକୁ ମୂଳଧନ କରି ବ୍ୟବସାୟ କଲେ ।

ଲୀଳା—ଅଇ, ରାତି ହେଲାଣି ଚାଲ ଖାଇ ଶୋଇବା ।



## ଏକାଦଶ ସନ୍ଧ୍ୟା ।

## ରୋଷେଇଘର ।

---

ଲୀଳାବତୀ—ଆଇ, ଆଜି କିଛି କହ ।

ଆଈ—ଆଜି ତୁମ୍ଭମାନଙ୍କୁ ରୋଷେଇଘର କଥା କହିବି ।

କଣାମଣି—ରୋଷେଇଘର କାହାଣୀ କହିବ ?

ଆଈ—ନା ତାହା ନୁହେ । ଅଚ୍ଛା କହିଲ ରୋଷେଇଘର କେମନ୍ତ ସ୍ଥାନରେ କପରି ଭାବରେ କରିବା ଉଚିତ ?

ସତ୍ୟବତୀ—ରୋଷେଇଘର ଏହିପରି ସ୍ଥାନରେ ହେବା ଉଚିତ ଯେଉଁ ସ୍ଥାନକୁ ବାହାର ଲୋକଙ୍କ ଦୃଷ୍ଟି ପଡ଼ିବ ନାହିଁ, ଏବଂ ରୋଷେଇ-ଘର ଧୂଆଁ ଅନ୍ୟ ଘରକୁ ଆସି ପାରିବ ନାହିଁ ।

ଆଈ—ତାହା ସତ । ରୋଷେଇଘର ପରିଷ୍କାର ସ୍ଥାନରେ କରିବା ଉଚିତ । ରୋଷେଇଘର ପାଖରେ ନାଳୁଅ ରଖିବ ନାହିଁ । ରୋଷେଇ ଘରକୁ ଅତି କ୍ଷୁଦ୍ର କରିବ ନାହିଁ । ଘର ଭିତରକୁ ଯେପରି ଅଧିକ-ପରିମାଣରେ ଆଲୋକ ଓ ବାୟୁ ଆସି ପାରିବ ତାହାର ଉପାୟ କରିବ । କେହି୨ ସୁବିଧା ହେବ ବୋଲି ରୋଷେଇଘର ପାଖରେ ନାଳୁଅ ରଖି ଧୂଆଧୋଇ କରିଥିବା ଅପରିଷ୍କାର ଜଳ, ପେଜ, ଚୂଡ଼ାଧୁଆପାଣି ଓ ନାନାପ୍ରକାର ଅଳିଆ ପକାଇ ଦିଅନ୍ତି । କେହି୨ ରୋଷେଇ-ଘର କାନ୍ଥରେ କଣା କରି ସେହି ବାଟେ ପାଉଁଶ, ଅଇଁଠାପତ୍ରାଦି ବାହାରକୁ ଫୋପାଡ଼ି ଦିଅନ୍ତି । ଅପରିଷ୍କାର ସ୍ଥାନରେ ନାନାପ୍ରକାର କୀଟ, ମାଛି ପ୍ରଭୃତି ଜନ୍ମନ୍ତି । ରୋଷେଇଘର ପାଖ ଅପରିଷ୍କାର ହେଲେ ବାୟୁ ଦୂଷିତ ହୁଏ । ବାୟୁ ଦୂଷିତ ହେଲେ ଅନ୍ନବ୍ୟଞ୍ଜନାଦି ବିକୃତ ହୁଏ । କୀଟ ପତଙ୍ଗାଦି ଦ୍ୱାରା ମଧ୍ୟ ଅନ୍ନବ୍ୟଞ୍ଜନାଦି ଦୂଷିତ ହୁଏ ।

ଅପରିଷ୍କାର ସ୍ଥାନରେ ପ୍ରସ୍ତୁତ ଦ୍ରବ୍ୟାଦି ଖାଇବାକୁ ରୁଚିକର ହୁଏ ନାହିଁ । ଦୂଷିତ, କୀଟଯୁକ୍ତ ଅବା ଅରୁଚିକର ଖାଦ୍ୟଦ୍ରବ୍ୟାଦି ଉଦରସ୍ଥ ହେଲେ ନାନାପ୍ରକାର ପୀଡ଼ା ଜନ୍ମେ । ରୋଷେଇଘର ପାଖରେ ଅଳଆ ପ୍ରଭୃତି ନ ପକାଇ ଟିକିଏ ଦୂରକୁ ଯାଇ ପକାଇ ଦେବା ଭଲ । ମାତ୍ର ଏହିପରି ସାମାନ୍ୟ କଷ୍ଟ ସ୍ୱୀକାର କରିବାକୁ କୁଣ୍ଠିତ ହୋଇ ଅନେକେ ନାନାପ୍ରକାର ରୋଗକୁ ଡାକି ଆଣନ୍ତି । ରୋଷେଇଘର ଚଟାଣ ପ୍ରତିଦିନ, ପକା ହେଲେ ଦୁଇଥର ଧୋଇ ଦେବା ଉଚିତ; ମାଟିର ହେଲେ ଦୁଇଥର ଲିପି ଦେବା ଉଚିତ । ଦୁଇ ତିନ ଦିନରେ ଥରେ ରୋଷେଇ ଘର କାନ୍ଥ ଓ ଛାତରେ ଲାଗିଥିବା ଧୂଳି, ଅଳନ୍ଧ ପ୍ରଭୃତି ଝାଡ଼ି ଦେବା ଉଚିତ ।

ଏପରି ଅନେକ ସ୍ତ୍ରୀ ଅଛନ୍ତି ସେମାନେ ହାତରେ ଲାଗିଥିବା କଳା, ପାଉଁଶ, ତେଲ ପ୍ରଭୃତି ଆପଣା ପିନ୍ଧିଥିବା ଲୁଗାରେ ପୋଛି ଦିଅନ୍ତି । କେହି୨ ଅବା ପିନ୍ଧିବା ଲୁଗାରେ ସିଙ୍ଘାଣି ପ୍ରଭୃତି ପୋଛନ୍ତି । ରୋଷେଇ ଘରେ ଖଣ୍ଡିଏ ପିଢ଼ାରେ ବସି ରୋଷେଇ ନ କରି ଅନେକେ ପିନ୍ଧିବା ଲୁଗାକୁ ଅଧିକ ଅପରିଷ୍କାର କରନ୍ତି । ଅପରିଷ୍କାର ଲୁଗା ପିନ୍ଧିଲେ ଆପଣାର ସ୍ୱାସ୍ଥ୍ୟ ହାନି ହୁଏ, ତାହା ବୁଝନ୍ତି ନାହିଁ । କେଣେ୨ ଏପରି ନିର୍ବୋଧ ଅଛନ୍ତି ଯେ, ବାସନ ପ୍ରଭୃତି ଧୋଇ, ଆପଣାର ଅପରିଷ୍କାର ଲୁଗାରେ ପୋଛି, ସେହି ପାତ୍ରରେ ଭୋଜନ କରିବାକୁ ଦିଅନ୍ତି ।

ଅନେକେ ପିଇବା ସକାଶେ ପରିଷ୍କାର ଜଳ ବ୍ୟବହାର କରନ୍ତି, ମାତ୍ର ରନ୍ଧନ ସକାଶେ ପରିଷ୍କାର ଜଳ ବ୍ୟବହାର ନ କରି ନାନା ରୋଗକୁ ନିମନ୍ତ୍ରଣ କରି ଆଣନ୍ତି । କାରଣ ଦୂଷିତ ଜଳରେ ଅନ୍ନ ବ୍ୟଞ୍ଜନ ଦୂଷିତ ହୁଏ । ଚାଉଳ, ପରିବା, ମାଛ, ଡାଲି ପ୍ରଭୃତି ରନ୍ଧନ କରିବା ପୂର୍ବେ ପରିଷ୍କାର ଜଳରେ ଭଲ କରି ଧୋଇ ଘଷି ନେବ । କୌଣସି୨

ସ୍ତ୍ରୀ ଏଡ଼େ ଅଳଘୋଷ୍ଟ ଯେ ଭଲ କର ଧୋଇବା ଦେଣିବ ଥାଉ, ମାଛ, ଘରବା ପ୍ରଭୃତିରେ ୫ଡ଼ଏ ପାଣି ଢାଳଦେଇ, ସେହି ପାଣି ନଗିଡ଼ି-ଗଲେ ହାଣ୍ଡିରେ ପକାଇ ଦିଅନ୍ତି । ଡାଲି ଚାଉଳ ପ୍ରଭୃତିରେ ଧୂଳ, ଗୋଡ଼ି, ମଳ୍ଲକୀଟ ପ୍ରଭୃତି ବହୁପରିମାଣରେ ଥାଏ । ଏଣୁ ସେହି ପଦାର୍ଥମାନଙ୍କୁ ଭଲରେ ପାଛୁଡ଼ି, ବାଛ, ତହିଁ ଉତ୍ତାରୁ ଅଧିକ ଜଳରେ ଦୁଇ ତିନିଥର ଧୋଇବା ଉଚିତ ।

ଚୁଲ୍ଲୀ ଉପରେ ହାଣ୍ଡି ପ୍ରଭୃତି ଥିଲାବେଳେ ଫୁଙ୍କିବାର ଅବଶ୍ୟକ ହେଲେ ହାଣ୍ଡି ମୁହଁରେ ପଲମ ପ୍ରଭୃତି ଘୋଡ଼ାଇ ଦେବ । ତାହା ନ କଲେ ପାଉଁଶ ପ୍ରଭୃତି ଉଡ଼ି ହାଣ୍ଡି ଭିତରେ ପଡ଼ି ଖାଦ୍ୟପଦାର୍ଥକୁ ଅପରିଷ୍କାର ଓ ଦୂଷିତ କରିବ । ଅନ୍ନ ବ୍ୟଞ୍ଜନାଦ ପ୍ରସ୍ତୁତ ହେଲେ ତାହାକୁ ଘୋଡ଼ାଇ ରଖିଲେ ଧୂଳ କୀଟ ପ୍ରଭୃତି ପଡ଼ି ପାରେ ନାହିଁ ଏବଂ ଖାଦ୍ୟ-ପଦାର୍ଥ ଶୀଘ୍ର ଶୀତଳ ହୁଏ ନାହିଁ । ରାନ୍ଧିବା ବେଳେ କଅଣ ଅଗେ କଅଣ ପଛେ ରାନ୍ଧିବାକୁ ହେବ ତାହା ବିଚାର କରି ରାନ୍ଧିବା ଉଚିତ । ଘିଅ ଓ ଭାଜି ପ୍ରଭୃତି ଶୀତଳ ହେଲେ ଖାଇବାକୁ ତୃପ୍ତିକର ହୁଏ ନାହିଁ । ଅମ୍ବିଳ ଉଷୁମ ଥିଲେ ଖାଇବାକୁ ସୁଖ ଲାଗେ ନାହିଁ । ଏଣୁ ଅମ୍ବିଳ ପ୍ରଭୃତି ଅଗେ ଏବଂ ଭାଜି, ଘିଅ ପ୍ରଭୃତି ପଛେ ରାନ୍ଧିବା ଉଚିତ । ପିତଳ ଅବା ତମ୍ବା ପ୍ରଭୃତି ହାଣ୍ଡି ପରିବର୍ତ୍ତରେ ମାଟିହାଣ୍ଡି, ଏବଂ ପିତଳ କରେଇ ପରିବର୍ତ୍ତରେ ଲୁହା କରେଇ ବ୍ୟବହାର କରିବା କର୍ତ୍ତବ୍ୟ । ପିତଳ ପ୍ରଭୃତି ଧାତୁପାତ୍ରରେ ଖାଦ୍ୟଦ୍ରବ୍ୟ ପ୍ରସ୍ତୁତ କଲେ କମ୍ବା ଅଧିକ କ୍ଷଣ ରଖିଲେ ତାହା ଦୂଷିତ ହୁଏ । ପ୍ରତିଦିନ ଏକ ପ୍ରକାର ବ୍ୟଞ୍ଜନ ରାନ୍ଧିବ ନାହିଁ । ପ୍ରତ୍ୟହ ଏକପ୍ରକାର ବ୍ୟଞ୍ଜନ ଖାଇବାକୁ ସୁଖ ଲାଗେ ନାହିଁ ।

ପରିବେଷଣ ହାତରେ ନ କରି ଖଣ୍ଡିଏ ଶଗ, ଡାଟିଅ ଅବା କରଛୁଲି-ରେ କରିବ । ବ୍ୟଞ୍ଜନାଦି ଅଧିକ ଘଞ୍ଚାଘଞ୍ଚି ହେଲେ କମ୍ବା ତହିଁରେ ହାତ

ବାଜିଲେ ବକ୍ତ ହୋଇଯାଏ । ଅମ୍ଳିକ ଧାତୁପାତ୍ରରେ ଭୋଜନ କରିବାକୁ ଦେଲେ ଉତ୍କୃଷ୍ଟ ଯାଇ ସ୍ୱାସ୍ଥ୍ୟହାନି କରେ । ଅମ୍ଳିକ ପରିବେଷଣ ସକାଶେ ପଥୂରୀ ବ୍ୟବହାର କରିବା ଉଚିତ । ଯେଉଁ ପାତ୍ରରେ ଜଣେ ଭୋଜନ କରିଅଛି ତାହା ନ ଧୋଇ ଅନ୍ୟ ବ୍ୟକ୍ତିକୁ ସେହି ପାତ୍ରରେ ଭୋଜନ କରିବାକୁ ଦେଲେ ସ୍ୱାସ୍ଥ୍ୟହାନି ହୁଏ । ଏକ ପାତ୍ରରେ ଏକ ସମୟରେ ଏକରୁ ଅଧିକ ବ୍ୟକ୍ତିଙ୍କୁ ଖାଇବାକୁ ଦେବ ନାହିଁ । ଗୃହରେ ଅଧିକ ଲୋକଙ୍କୁ ନିମନ୍ତ୍ରଣ ହୋଇଥିଲେ, ଅଧିକ ସଂଖ୍ୟାରେ ଏବଂ ବାହୁଲ୍ୟ-ଭାବରେ ଖାଦ୍ୟଦ୍ରବ୍ୟ ପ୍ରସ୍ତୁତ କରିବାକୁ ହୁଏ । ସେପରି ସ୍ଥଳରେ ରାନ୍ଧୁଣୀ ପରିବେଷଣ ଭାର ଆପେ ଗ୍ରହଣ ନ କରି ଅନ୍ୟକୁ ଦେଲେ ସୁବିଧା ହୁଏ । ଅନେକ ସ୍ଥଳରେ ପରିବେଷଣ ଦୋଷରୁ ଖାଦ୍ୟଦ୍ରବ୍ୟର ଅଭାବ, କୌଣସି ସ୍ଥଳରେ ଅବା ପ୍ରଚୁରପରିମାଣରେ ନଷ୍ଟ ହୁଏ । ଅତଏବ ବିବେଚନା କରି ପରିବେଷଣ କଲେ ଏହି ଦୁଇପ୍ରକାର ତ୍ରୁଟି ଘଟି ପାରଇ ନାହିଁ । ଭୋଜନ ଶେଷ ହେଲେ ହାଣ୍ଡି, କରେଇ, କଡ଼ଛୁଲି ପ୍ରଭୃତି ଉତ୍ତମରୂପେ ଧୋଇ ପରିଷ୍କାର କରି ରଖିବ ।

ଆଜି ଏତିକି ହେଉ ଶୋଇବା ଚାଲ ।



ଦ୍ୱାଦଶ ସନ୍ଧ୍ୟା ।

# ଚୂଲ୍ଲୀ, ପାକପାତ୍ର, ପରିବା, ଓ ମଶଲା ।

କଣାମଣି—ଅଇ, ମୋଜା କେମନ୍ତେ ବୁଣନ୍ତ ମତେ ଶିଖାଇ ଦିଅନ୍ତୁ ?

ଲୀଳାବତୀ—ମୁ ଆଗେ କମ୍ଫାଟର ବୁଣି ଶିଖିବି ।

ଅଇ—ଆଜି କାଲି ସମସ୍ତେ ବାଳିକାମାନଙ୍କୁ ଉଲଯୋଡ଼ା, ମୋଜା, କମ୍ଫାଟର ପ୍ରଭୃତି ବୁଣିବାକୁ ଶିକ୍ଷା ଦେଉଅଛନ୍ତି; ମାତ୍ର ଉପରେ ଗୃହସ୍ଥିକାର୍ଯ୍ୟ ଶିଖିବେ, ଉପରେ ଘର କରିବେ ତାହା ଶିକ୍ଷା ଦେଉ ନାହାନ୍ତି । ରନ୍ଧନାଦି କାର୍ଯ୍ୟ ଶିକ୍ଷା କରି ତହିଁ ଉତ୍ତାରୁ ମୋଜା ପ୍ରଭୃତି ବୁଣି ଶିଖିବା ଉଚିତ । ଜର୍ମାନଦେଶରେ ବାଳିକାବିଦ୍ୟାଳୟମାନଙ୍କରେ, ବାଳିକାମାନଙ୍କୁ ବିଦ୍ୟାଶିକ୍ଷା ସଙ୍ଗେ ରନ୍ଧନକାର୍ଯ୍ୟ ଶିକ୍ଷା ଦିଅନ୍ତି । ଇଉରୋପରେ ଯେଉଁ ବାଳିକା ଗୀତ ବାଦ୍ୟ ଓ ନୃତ୍ୟ ନ ଜାଣେ, ବିଦ୍ୟା ଶିକ୍ଷା କରି ନ ଥାଏ, ଚିତ୍ରବିଦ୍ୟା, ସୂଚୀକାର୍ଯ୍ୟ ଏବଂ ରନ୍ଧନରେ ପାରଦର୍ଶିନୀ ନୁହେ ତାହାକୁ ଗୁଣବତୀ ବୋଲି କହନ୍ତି ନାହିଁ । ଇଉରୋପର ସବୁଦେଶମାନଙ୍କରେ ଅନେକ ସ୍ତ୍ରୀ କିରାଣୀ, ପୋଷ୍ଟମାଷ୍ଟର, ଟେଲିଗ୍ରାଫମାଷ୍ଟର, ଡାକ୍ତର, ଉକୀଲ, ଶିକ୍ଷକ, ଗ୍ରନ୍ଥଲେଖକଙ୍କ କାର୍ଯ୍ୟ କରି ଉଦର ପାଳନ କରନ୍ତି । ସ୍ତ୍ରୀ ହେଉ ଅବା ପୁରୁଷ ହେଉ ଆପଣା ପେଟ ପାଳିବା ନିମନ୍ତେ ଗୋଟିଏ ବ୍ୟବସାୟ ଭଲ କରି ଶିକ୍ଷା କରିବା ଉଚିତ । ଏଦେଶରେ କାହାର କିଏଟଙ୍କାର ଚାକିରୀ ହେଲେ, ତାଙ୍କର ସ୍ତ୍ରୀ ଏକାବେଳକେ ଠାକୁରାଣୀ ପାଲଟି ଯାନ୍ତି । ସେ ଗୃହର ସମସ୍ତ କାର୍ଯ୍ୟର ଭାର ପୂଜାରୀ, ଚାକର, ଏବଂ ଦାସୀ ଉପରେ ଦେଇ, ଆପେ ଶୋଇ, ବସି, ଗଳ୍ପ କରି ଦିନ କଟାନ୍ତି । କୌଣସି ପ୍ରକାର ଶାରୀରିକ

ପରିଶ୍ରମର କାର୍ଯ୍ୟକୁ ଏମାନେ ନିନ୍ଦନୀୟ ବୋଲି ଜ୍ଞାନ କରନ୍ତି । ତୁମ୍ଭେ ଅମ୍ଭେ କେଉଁ ଛାର, ଅମ୍ଭମାନଙ୍କ ମହାମହେଶ୍ୱରୀ ଆପଣାର କନ୍ୟାମାନଙ୍କୁ ରନ୍ଧନକାର୍ଯ୍ୟ ଏବଂ ଦୁଧରୁ ଲହୁଣୀ କାଢିବା ପ୍ରଭୃତି ଶିକ୍ଷା ଦେଉଥିଲେ ।

ତୁମ୍ଭମାନଙ୍କୁ ରୋଷେଇଘର କଥା କହିଅଛୁ, ଆଜି ଚୁଲ୍ଲୀ, ଜାଳ, ପାତ୍ର ଓ ପରିବା ପ୍ରଭୃତିର କଥା କହିବ । ସ୍ଥଳବିଶେଷରେ ଚୁଲ୍ଲୀ ଓ ଜାଳ ଦୋଷରୁ ରନ୍ଧନକାର୍ଯ୍ୟ ସୁଚାରୁରୂପେ ହୁଏ ନାହିଁ । ଜାଳ-ଦୋଷରୁ ଖାଦ୍ୟଦ୍ରବ୍ୟ କେତେବେଳେ ଅତିସିଦ୍ଧ, କେତେବେଳେ ଅର୍ଦ୍ଧସିଦ୍ଧ, କେତେବେଳେ ଅବା ପୋଡ଼ି ଯାଇ ବିସ୍ୱାଦ ହୁଏ । ଏଣୁ ଚୁଲ୍ଲୀ ଓ ଜାଳପ୍ରତି ଦୃଷ୍ଟି ରଖି କାର୍ଯ୍ୟ କରିବା ଉଚିତ । ପ୍ରତ୍ୟହ ଚୁଲ୍ଲୀର ପାଉଁଶ ଓ ଅଙ୍ଗାର ପ୍ରଭୃତି କାଢ଼ି ନେଇ, ଗୋବର ଦେଇ ଲିପି ଦେବ; ଲିପି ନ ଦେଲେ ଚୁଲ୍ଲୀ ଫାଟିଯାଏ । ଯେଉଁ ଆଡ଼ୁ ପବନ ବହୁଥାଏ, ସେହି ଆଡ଼କୁ ଚୁଲ୍ଲୀମୁହଁ କରିବ ନାହିଁ । ପବନ ଆଡ଼କୁ ଚୁଲ୍ଲୀମୁହଁ ଥିଲେ ଜାଳ ଭଲ ଜଳେ ନାହିଁ । ଚୁଲ୍ଲୀ ଏପରି ଭାବରେ କରିବ ଯେମନ୍ତ ହାଣ୍ଡିର ଚାରିଆଡ଼କୁ ସମାନଭାବରେ ତାପ ଲାଗିବ । ସେପରି ନ କଲେ ଦ୍ରବ୍ୟର କେତେକାଂଶ ସୁସିଦ୍ଧ କେତେକାଂଶ ଅସିଦ୍ଧ ହୁଏ । ସର୍ବପ୍ରକାର ରନ୍ଧନରେ ସମାନଭାବରେ ଜାଳ ଆବଶ୍ୟକ ହୁଏ ନାହିଁ । ସ୍ଥଳବିଶେଷରେ ପ୍ରଥମ ଅଧିକ ଜାଳ ଦେଇ, ତହିଁ ଉତ୍ତାରୁ ଜାଳ କ୍ରମରେ ଊଣା କରି ପଛକୁ ଜଳନ୍ତା ଅଙ୍ଗାର ଉପରେ ହାଣ୍ଡି ରଖି କାର୍ଯ୍ୟ କରିବାକୁ ହୁଏ । ଭାଜିବା ଅବା ପୋଡ଼ିବା ଦ୍ରବ୍ୟ ଅଧିକ ଜାଳରେ ଏକାବେଳକେ ନଷ୍ଟ ହୋଇଯାଏ ।

ରାନ୍ଧିବା ସକାଶେ ସାଧାରଣରେ ମୃତ୍ତିକାପାତ୍ର ବ୍ୟବହାର କରନ୍ତି । ମୃତ୍ତିକାପାତ୍ର ଧାତୁପାତ୍ରଠାରୁ ନିର୍ଦ୍ଦୋଷ ଅଟେ; ଏଣୁ ତହିଁରୁ କୌଣସି

ପ୍ରକାର ଅନିଷ୍ଟ ହେବାର ଆଶଙ୍କା ନ ଥାଏ । ପିତଳ କିମ୍ବା ତମ୍ବା-ପାତ୍ରରେ ଖାଦ୍ୟପଦାର୍ଥ ବିଷାକ୍ତ ହୋଇପାରେ; ମାତ୍ର କଲେଇ କରି-ନେଲେ ସେପରି ଅନିଷ୍ଟ ହେବାର ସମ୍ଭାବନା ନ ଥାଏ । ପାକପାତ୍ର ସର୍ବଦେଳେ ପରିଷ୍କୃତ ରଖିବ । ମାଟିହାଣ୍ଡି ହେଲେ, ରନ୍ଧନ ଉତ୍ତାରୁ ତାହାକୁ ଧୋଇ ତାହାର ଉପରଭାଗ କଳାକନାରେ ପୋଛି, ଅଳ୍ପ ଗରମ କରି ରଖିବ । ଧାତୁପାତ୍ର ହେଲେ ରନ୍ଧନ ଉତ୍ତାରୁ ଉତ୍ତମ-ରୂପେ ଘଷି ମାଜି ରଖିବ । ଲୌହପାତ୍ରକୁ ଯେତେ ପରିଷ୍କାର ରଖିବ ତାହା ତେତେଦିନ ସ୍ଥାୟୀ ହେବ । ମାଟିହାଣ୍ଡିର ମୂହଁ ଘୋଡ଼ାଇବା ସକାଶେ ଖଣ୍ଡିଏ୨ ପଲମ କିମ୍ବା ଶରା ରଖିଥିବ ।

ସାଧାରଣରେ ପନିକିରେ ପରିବା କାଟନ୍ତି । ପରିବା କାଟିସାରି ପନି-କିକୁ ଧୋଇ ରଖି ଦେବ । ପରିବା କାଟିବା ବେଳେ ସମ୍ମୁଖରେ ଜଳପାତ୍ର ରଖିଥିବ; ପରିବା କାଟିଲା କ୍ଷଣି ତାକୁ ଜଳପାତ୍ରରେ ପକାଇବ । ପରିବା କାଟିସାରି ଉତ୍ତମରୂପେ ଧୋଇ ଅନ୍ୟ ପାତ୍ରରେ ରଖିବ । ସେହିପରି ନ କଲେ କେଉଁ ପରିବା ବିବର୍ଣ୍ଣ ହୋଇଯାଏ ଏବଂ କେଉଁ ପରିବା ଅବା ସୁସିଦ୍ଧ ହୁଏ ନାହିଁ । ବାଇଗଣ, କଦଳୀ, କଖାରୁ ପ୍ରଭୃତିର ଚୋପା ଛଡ଼ାଇ କାଟିବା ଉଚିତ । ଚୋପା ଥିଲେ ତରକାରି ସ୍ୱାଦୁ ଲାଗେ ନାହିଁ । କୌ-ଣସି ପ୍ରକାର ପରିବାର ଚୋପା ପାକସ୍ଥଳୀରେ ଜୀର୍ଣ୍ଣ ହୁଏ ନାହିଁ, ଏଣୁ ପରିବାର ସେହି ଅଂଶ ପରିତ୍ୟାଗ କରିବା ଉଚିତ । ଶାଗ ପ୍ରଭୃତି ଉତ୍ତମରୂପେ କଟା ହୋଇ ନ ଥିଲେ ସୁସିଦ୍ଧ କିମ୍ବା ରୁଚିକର ହୁଏ ନାହିଁ ।

ମଶଲା ହେତୁ ତରକାରି ସୁସ୍ୱାଦୁ ଏବଂ ଦେଖିବାକୁ ରୁଚିକର ହୁଏ । ମଶଲା ଊଣାଅଧିକ ହେଲେ ତରକାରି ସୁଖାଦ୍ୟ କିମ୍ବା ଅଖାଦ୍ୟ ହୁଏ । କେହି୨ ମନରେ କରନ୍ତି ମଶଲା ଅଧିକ ଦେଲେ ବ୍ୟଞ୍ଜନ ଅଧିକ ସୁ-

ମାଣରେ ସୁସ୍ୱାଦୁ ହୁଏ; ମାତ୍ର ତାହା ସେମାନଙ୍କର ଭ୍ରମ ଅଟେ । ଏକାବେଳକେ ମଶଲା ନ ଦେଲେ ତରକାରି ଯେପରି ଭଲ ଲାଗଇ ନାହିଁ, ମଶଲା ଅଧିକ ଦେଲେ ତରକାରି ସେହିପରି ବିସ୍ୱାଦୁ ହୋଇ-ଯାଏ । ମଶଲା ଅଧିକ ଖାଇଲେ ପେଟ ଗରମ ହୋଇ ସ୍ୱାସ୍ଥ୍ୟ ହାନି କରେ ।

ସାଧାରଣରେ ରନ୍ଧନକାର୍ଯ୍ୟରେ ହଳଦି, ଅଦା, ଲଙ୍କାମରିଚ, ଗୋଲ-ମରିଚ, କଳାଜୀରା, ଧନିଆ, ସୋରିଷ, ତେଜପତ୍ର, ହାଣ୍ଡିଧୂଆ, ଲବଙ୍ଗ, ଡାଲଚିନି, ଅଳେଇଚ, ଗୁଜୁରାଟି ବ୍ୟବହାର କରନ୍ତି । ସ୍ଥଳ ବିଶେ-ଷରେ ଜାଫରାନ ଓ ହେଙ୍ଗୁ ମଧ୍ୟ ବ୍ୟବହାର କରନ୍ତି । ଏମାନଙ୍କ ମଧ୍ୟରୁ ଅଳେଇଚ, ଲବଙ୍ଗ, ଗୁଜୁରାଟି, ଡାଲଚିନିକୁ ଗରମମଶଲା କହନ୍ତି । ରନ୍ଧନ ଉତ୍ତାରୁ ଅର୍ଥାତ୍ ଚୁଲ୍ଲୀରୁ ହାଣ୍ଡି ତଳକୁ ଓହ୍ଲାଇ ଆଣି ଗରମମଶଲା ବ୍ୟବହାର କରନ୍ତି । ଗରମମଶଲା ଦେଇ ଜାଳ ଦେଲେ ମଶଲାର ଗନ୍ଧ ଉଡ଼ିଯାଏ ଏବଂ ତରକାରି ବିସ୍ୱାଦ ହୁଏ । ଏଣୁ ଗରମମଶଲା ଦେଇ ତରକାରିକୁ ଥରେ ଘାଣ୍ଟି ଦେଇ, ହାଣ୍ଡି ମୁହଁ ଘୋଡ଼ାଇ ରଖିବ ।

ମଶଲା ଚୂର୍ଣ୍ଣ ହୋଇ କିମ୍ବା ବଟା ହୋଇ ତରକାରିରେ ପଡ଼େ । ମଶଲା ବାଟି କିମ୍ବା ଚୂର୍ଣ୍ଣ କରିବା ପୂର୍ବେ ଉତ୍ତମରୂପେ ବାଛି ପରିଷ୍କାର କରି ନେବ । ବଟା ମଶଲା ଚନ୍ଦନ ପରି ଚିକ୍କଣ କରି ବାଟିବ । ତାହା ନ କଲେ ତରକାରି ସଙ୍ଗେ ଭଲ ହୋଇ ମିଶେ ନାହିଁ । ଯେଉଁ ମଶଲା ଚୂର୍ଣ୍ଣ କରିବାକୁ ହେବ ତାହାକୁ ନିଆଁ ପାଖରେ କିମ୍ବା ଖରାରେ ରଖିଲେ ଅନାୟାସରେ ଚୂର୍ଣ୍ଣ ହେବ । ଗରମମଶଲା ବ୍ୟବହାର କରି-ବାର ଅଧିକ କ୍ଷଣ ପୂର୍ବରୁ ବାଟି ରଖିଲେ ତାହାର ଗନ୍ଧ ନଷ୍ଟ ହୋଇ ଯାଏ । ଏଣୁ ବ୍ୟବହାରର ଅବ୍ୟବହିତ ପୂର୍ବେ ଅଳ୍ପ ଜଳରେ ବାଟି

ବ୍ୟବହାର କରିବ । ଗରମମଶଲା ଅଧିକ ଜଳ ଦେଇ ବାଟିବ ନାହିଁ । କାରଣ ରନ୍ଧନ ଉତ୍ତାରୁ ଗରମମଶଲା ବ୍ୟବହାର କରିବାକୁ ହୁଏ, ଏଣୁ ଗରମମଶଲାରେ ଜଳ ଥିଲେ ତରକାରି ପାଣିଆଟି ଯାଇ ବିସ୍ୱାଦ ହୁଏ ।

ତରକାରିରେ ତିନିଥର ମଶଲା ବ୍ୟବହାର କରିବାକୁ ହୁଏ । ପ୍ରଥମ ତରକାରି ଚୁଲିରେ ବସାଇଲା ବେଳେ ହଳଦି, ଲଙ୍କାମରିଚ, ଏବଂ ଧନିଆ ପ୍ରଭୃତି ବ୍ୟବହୃତ ହୁଏ । ତହିଁ ଉତ୍ତାରୁ ବଘାରିଲା ବେଳେ ହାଣ୍ଡିମଶଲା*, ମରିଚ, ତେଜପତ୍ର ପ୍ରଭୃତି ବ୍ୟବହାର କରିବାକୁ ହୁଏ । ଶେଷକୁ ହାଣ୍ଡି ଚୁଲିରୁ ଓହ୍ଲାଇ ଆଣି ଗରମମଶଲା ଦେଇ ଘୋଡ଼ାଇ ରଖିବାକୁ ହୁଏ । ବଟା ମଶଲାଠାରୁ ଗୁଣ୍ଡା ମଶଲା ବ୍ୟବହାର କଲେ ତରକାରି ଅଧିକ ସୁସ୍ୱାଦୁ ହୁଏ ଏବଂ ଅଧିକ କ୍ଷଣ ରଖିଲେ ମଧ୍ୟ ନଷ୍ଟ ହୁଏ ନାହିଁ ।

ଆଜି ଏହିଠାରେ ଥାଉ, ଯିବା ଚାଲ ।



---

* ମେଥି, ପାନମହୁରି, ଜୀରା, ଓ କଳାଜୀରାକୁ ହାଣ୍ଡିମଶଲା କହନ୍ତି ।

## ତ୍ରୟୋଦଶ ସନ୍ଧ୍ୟା ।

# ଅନ୍ନ ।

ଅଣ୍ଣ—ଆଜି ତୁମ୍ଭମାନଙ୍କୁ ଭାତ ରାନ୍ଧିବା କଥା କହିବି ।

ପଦ୍ମାବତୀ—ଭାତ କାହାକୁ ରାନ୍ଧି ନ ଆସେ ଯେ ଭାତ ରାନ୍ଧିବା କଥା ଶୁଣିବା ।

ଅଣ୍ଣ—ଅଚ୍ଛା, ଖେଚୁଡ଼ି କପର ରାନ୍ଧନ୍ତି କହିଲ ?

ପଦ୍ମା—ମୁଁ ଭାତ କଥା କହୁଥିଲି, ଖେଚୁଡ଼ି କଅଣ ଭାତ ?

ଅଣ୍ଣ—ଖେଚଡ଼ିକୁ ସଂସ୍କୃତରେ ଖେଚରାନ୍ନ କହନ୍ତି । ଖେଚରାନ୍ନ, ପଲାନ୍ନ, ଭର୍ଜିତାନ୍ନ ପ୍ରଭୃତି ଅନ୍ନ କମ୍ବା ଭାତର ରୂପାନ୍ତର ଅଟେ । ପ୍ରଥମ ସାଧାରଣ ଅନ୍ନ କଥା କହି ତହିଁ ଉତ୍ତାରୁ ଅନ୍ୟପ୍ରକାର ଅନ୍ନର କଥା କହିବ । ଯେତେ ଚାଉଳ ତାହାର ତିନ ଗୁଣ ଜଳ ଦେଇ ଅନ୍ନ ପାକ କରିବ । କାରଣ ଜଳ ଅଳ୍ପ ହେଲେ ଭାତ ଲାଗିଯାଏ କମ୍ବା ଦରସିଝା ହୋଇ ଟେଳା ବାନ୍ଧି ଯାଏ । ଏଣୁ ଅଧିକ ଜଳରେ ଅନ୍ନ ସିଦ୍ଧ କରିବା କର୍ତ୍ତବ୍ୟ । ଭାତ ରାନ୍ଧିଲା ବେଳେ ପ୍ରଥମାବସ୍ଥାରେ ଯେପରି ତୀବ୍ର ଜାଳ ଆବଶ୍ୟକ ହୁଏ, ଭାତ ଫୁଟି ଆସିଲେ ସେପରି ଅବଶ୍ୟକ ହୁଏ ନାହିଁ । କାରଣ ଫୁଟି ଆସିଲା ବେଳେ ଅଧିକ ଜାଳ ଦେଲେ ଲାଗିଯାଏ । ଭାତ ଫୁଟୁଥିବାବେଳେ ବାରମ୍ବାର କାଠି କମ୍ବା କରଚୁଲି ବୁଲାଇବ ନାହିଁ । କାରଣ ସେପରି କଲେ ଭାତ କାଦୁଅ ପରି ହୋଇଯାଏ ।

ନୂଆଠାରୁ ପୁରୁଣା ଚାଉଳର ଅନ୍ନରେ ଅଧିକ ଜାଳ ଆବଶ୍ୟକ ହୁଏ । ହାଣ୍ଡିରୁ ଗୋଟାଏ କମ୍ବା ଯୋଡ଼ାଏ ଭାତ ଚେନ ଚିପି ଦେଖିବ ସିଦ୍ଧ ହୋଇ ଅଛି କି ନାହିଁ । ସିଦ୍ଧ ହୋଇଥିଲେ ଜାଳ କାଢ଼ି ପେଜ ଗାଳି ପକାଇବ । ଯଦ୍ୟପି ଚୁଲ୍ଲୀରୁ ଓହ୍ଲାଇ ଭୋଜନ କରିବାର ଅବ-

ଷ୍ୟକ ହୁଏ ତାହାହେଲେ ଅନ୍ନ ନରମ ନ ହେଲେ ଚୂଲ୍ଲୀରୁ ଓହ୍ଲା-ଇବ ନାହିଁ । ଭୋଜନର ବିଳମ୍ବ ଥିଲେ ଅନ୍ନ ଅଳ୍ପ ପରିମାଣରେ କଞ୍ଚା ଥିବା ଅବସ୍ଥାରେ, ପେଜ ଗାଳି, ହାଣ୍ଡି ଚୂଲ୍ଲୀରୁ ଓହ୍ଲାଇ ଘୋଡ଼ାଇ ରଖିବ । ସେହିପରି କଲେ ଗରମ ବାମ୍ଫରେ ହାଣ୍ଡିର ଅନ୍ନ ନରମ ହୋଇ ଯିବ ।

ଅନ୍ନ ଅଳ୍ପ ଉଷ୍ଣ ଥିବା ଅବସ୍ଥାରେ ଆହାର କରିବ । ଶୀତଳ ଅନ୍ନ ଆହାର କଲେ ସ୍ୱାସ୍ଥ୍ୟ ହାନି ହୁଏ । ଚୂଲ୍ଲୀରୁ ଓହ୍ଲାଇ ଭାତହାଣ୍ଡି ମୂର୍ଦ୍ଧରେ ଖଣ୍ଡିଏ ପଲମ କମ୍ବା ଶସ୍ତ୍ର ଘୋଡ଼ାଇ ରଖିବ । ସେହି ଶସ୍ତ୍ରରେ ଅଳ୍ପ ପରିମାଣରେ ଜଳ ଦେଇ ରଖିଲେ, ହାଣ୍ଡିର ଅନ୍ନ ବହୁକ୍ଷଣ ଉଷ୍ଣ ରହିବ ।

## ଖେଚରାନ୍ନ ।

କେହି୨ ଅଳ୍ପାୟାସରେ ଖେଚଡ଼ିଭାତ ରାନ୍ଧନ୍ତି ଅର୍ଥାତ୍ ଡ଼ାଲିଭାତ ଏକତ୍ର କରି ହାଣ୍ଡିରେ ବସାଇ ଦେଇ, ସେଥିରେ ହଳଦି ଓ ଲୁଣ ପକାଇ ଦିଅନ୍ତି । ସିଦ୍ଧ ହେଲେ ଚୂଲ୍ଲୀରୁ ଓହ୍ଲାଇ ଗରମ ମଶଲାର ଗୁଣ୍ଡ ପକାଇ ଘୋଡ଼ାଇ ରଖନ୍ତି । ଖାଇଲା ବେଳେ ଘିଅ ଲଗାଇ ଖାନ୍ତି, ମାତ୍ର ଏପରି ଖେଚଡ଼ି ସୁସ୍ୱାଦୁ ହୁଏ ନାହିଁ ।

ଖେଚଡ଼ିର ପ୍ରଧାନ ଗୁଣ ଏହି ଯେ ଏହା ସହଜରେ ପ୍ରସ୍ତୁତ ହୁଏ ଏବଂ ତରକାରିର ବିନା ସାହାଯ୍ୟରେ ଭୋଜନ କରି ହୁଏ । ଭାତରୁ ପେଜ ଗାଳି ପକାଇବା ହେତୁ, ସେଥିରୁ ପୁଷ୍ଟିକର ପଦାର୍ଥର ଅଂଶ ବହୁପରିମାଣରେ ନଷ୍ଟ ହୋଇଯାଏ; ମାତ୍ର ଖେଚଡ଼ିରୁ ପେଜ ଗଳା ହେଉ ନ ଥିବାରୁ, ଏବଂ ଘୃତାଦି ସଂଯୋଗ ହେତୁ ଅଧିକ ପୁଷ୍ଟିକର ଏବଂ ଭାତଠାରୁ ଅପେକ୍ଷାକୃତ ଗୁରୁପାକ ହୁଏ । ଖେଚଡ଼ି ପାକର ଭିନ୍ନ୨ ସ୍ଥାନରେ ଭିନ୍ନ୨ ନିୟମ ପ୍ରଚଳିତ ଅଛି । ତୁମ୍ଭେମାନେ ନିମ୍ନ-

ଲିଖିତ ଦ୍ରବ୍ୟମାନଙ୍କରେ ପାକ କଲେ ଉତ୍କୃଷ୍ଟ ବାଦସାହି ଖେଚଡ଼ି ପ୍ରସ୍ତୁତ କରି ପାରିବ ।

ଯେତେ ଚାଉଳର ଖେଚଡ଼ି ପ୍ରସ୍ତୁତ କରିବ ତାହାର ଚାରିଗୁଣ ଡାଲି ଏବଂ ଡାଲିର ଅର୍ଦ୍ଧେ ଘିଅ ନେବ ଅର୍ଥାତ୍ ଚାଉଳ ପାଏ ହେଲେ, ଡାଲି ସେରେ ଏବଂ ଘିଅ ଅଧସେରେ ନେବ । ଡାଲି ଓ ଚାଉଳ ଉତ୍ତମରୂପେ ପାଛୁଡ଼ି ସେଥିରୁ ଖୁଦ ଓ କଣି ବାହାର କରି ଦେଇ, ଅଧିକ ଜଳରେ ଦୁଇ ତିନିଥର ପରିଷ୍କାର କରି ଧୋଇ ଚାଉଳଧୁଆରେ ରଖି ଜଳ ନିଗାଡ଼ି ନେବ । ତହିଁ ଉତ୍ତାରୁ ଥାଳୀ କିମ୍ବା କଦଳୀପତ୍ର ଉପରେ ଡାଲିଚାଉଳକୁ ବିଛାଇ ଦେଇ ଶୁଖାଇ ନେବ । ଘଣ୍ଟାଏ ଏହିପରି ରଖିଲେ ପବନ ବାଜି ଡାଲିଚାଉଳ ଝରଝର ହୋଇଯିବ । ଶୁଖୁଥିବା ବେଳେ ଥରେ୨ ହାତ ମାରି ଓଲଟପାଲଟ କରି ଦେଲେ ଶୀଘ୍ର ଶୁଖିଯାଏ । କେହି ଅବା ହାତରେ ଡାଲିଚାଉଳ ଗୋଟଗୋଟ କରି ବାଛି, ନ ଧୋଇ ଖେଚଡ଼ି ପାକ କରନ୍ତି । ପୁରୁଣା ଅରୁଆ ଚାଉଳ, ଏବଂ ମସୂରଡାଲି କିମ୍ବା ବୁଟଡାଲି ଅବା ହରଡ଼ଡାଲିରେ ଉତ୍କୃଷ୍ଟ ଖେଚଡ଼ି ହୁଏ ।

ଖେଚଡ଼ି ପାକ କରିବା ପୂର୍ବରୁ ଧନିଆ, ତେଜପତ୍ର, ଲଙ୍କାମରିଚ, ଗୋଲମରିଚ, ଜୀରା, ଜାଫରାନ ଅଭାବରେ ହଳଦୀ, ଲବଙ୍ଗ, ଡାଳଚିନି, ଡାଲଚିନି, ପିଆଜ, ଲୁଣ, ଦହି, ଚିନି, କିସମିସ୍ ଏବଂ ମାଂସ ସଂଗ୍ରହ କରିବ । ଚର୍ବି ନ ଥିବା ସେରେ ମାଂସ କ୍ଷୁଦ୍ର ଖଣ୍ଡ୨ କରି, ଚାରିସେର ଜଳ ଦେଇ ଚୁଲୀରେ ବସାଇବ । ଜଳ ଫୁଟି ଆସିଲେ ଛଟାଙ୍କ ଧନିଆ ଦୁଇତୋଳା, ଛଟାଙ୍କ ଗୋଲମରିଚ ତୋଳାଏ, ଛଟାଙ୍କ ଅଦା ଦୁଇତୋଳା, ଛଟାଙ୍କ ଜୀରା ତୋଳାଏ, ଗୋଟା ତେଜପତ୍ର ତୋଳାଏ, ଜାଫରାନ ତୋଳାଏ (ଅଭାବରେ ବଟା ହଳଦି ଦୁଇତୋଳା) ଦେଇ

ହାଣ୍ଡି ମୁହଁ ଖଣ୍ଡିଏ ଖପରରେ ଘୋଡ଼ାଇ ମୃଦୁ ଉତ୍ତାପରେ ସିଦ୍ଧ କରିବ । ହାଣ୍ଡିରୁ ସେରେ ଜଳ ମରିଗଲେ ଗୁଜୁରାଟିଦାନା ଦୁଇଅଣା, ଡାଲଚିନିଗୁଣ୍ଡ ଚାରିଅଣା, ଏବଂ ଲବଙ୍ଗ ଚାରିଅଣା ଓଜନର ପକାଇ ହାଣ୍ଡିମୁହଁ ଘୋଡ଼ାଇ ଦେବ । ଏହା ଉତ୍ତାରୁ ଅଉ ସେରେ ପାଣି ମରି-ଗଲେ ହାଣ୍ଡିକୁ ଚୂଲୀରୁ ଓହ୍ଲାଇ ଅନ୍ୟସ୍ଥାନରେ ଘଣ୍ଟାଏ ପର୍ଯ୍ୟନ୍ତ ରଖିବ । ତହିଁଉତ୍ତାରୁ ହାଣ୍ଡିରେ ଥିବା ମାଂସ ଓ ମସଲା ଉତ୍ତମରୂପେ ଚକଟି ଦେଇ, ଖଣ୍ଡିଏ ପରିଷ୍କାର କନାରେ ଛାଣି ସିଠାଗୁଡ଼ିକ ଫୋପାଡ଼ି ଦେବ ଏବଂ ଜଳକୁ ଗୋଟିଏ ପାତ୍ରରେ ଘୋଡ଼ାଇ ରଖିବ । ଧୂଆ ଡାଲି-ଚାଉଳ ଶୁଖିଗଲେ ଗୋଟାଏ ଡେକ୍‌ଚି କମ୍ବା ହାଣ୍ଡିରେ ପାଏ ଭଲ ଘିଅ ମୃଦୁ ଉତ୍ତାପରେ ବସାଇବ । ପୂର୍ବରୁ ପାଏ ପିଆଜ ଗୋଟାକୁ ଚାରି-ଖଣ୍ଡ କରି, ଏବଂ ବଲାଖିଅଲୁ ଗୋଟାକୁ ଦୁଇ ୨ ଖଣ୍ଡ କରି ରଖିଥିବ । ଘିଅ ଫୁଟି ଆସିଲେ ସେଥିରେ ପିଆଜ, ବଲାଖିଅଲୁ, ଚାରିଅଣା ଓଜ-ନର ଗୁଜୁରାଟିଦାନା, ଛଅଅଣା ଓଜନ ଡାଲଚିନିଖଣ୍ଡ; ଏବଂ ଚାରି ଅଣା ଓଜନର ଲବଙ୍ଗ ଦେଇ, ପିଠାଖଡ଼ିକାରେ ଖରଡ଼ି ଦେବ । ପିଆଜ ଅର୍ଦ୍ଧ ସିଦ୍ଧ ହୋଇ ଆସିଲେ ଏବଂ ଛଟାଙ୍କି ଓଜନ ଅଦାରସ ଦେଇ ଧୂଆଁପର ଖରଡ଼ି ଦେବ । ତାହାର ଅଳ୍ପକ୍ଷଣ ଉତ୍ତାରୁ ଡାଲି-ଚାଉଳ ଦେଇ ପିଠାଖଡ଼ିକାରେ ଅନବରତ ଓଲଟପାଲଟ କରିବ । ସେହିପରି କରୁ ୨ ଯେତେବେଳେ ଚାଉଳ ଭଜା ହୋଇଯାଇ ଚଡ଼ ୨ ଶବ୍ଦ କରିବ। ସେହି ସମୟରେ ପୂର୍ବପ୍ରସ୍ତୁତ ଜଳ ସେଥିରେ କ୍ରମେ ୨ ଢାଳି ଦେବ । ଜଳ ଢାଳୁଥିବା ବେଳେ ଚାଉଳ ଗୁଡ଼ିକୁ ଓଲଟ ପାଲଟ କରୁଥିବ । ଜଳ ଦେଇ ସାରି ଅଡ଼େଇ ତୋଳା ଲୁଣ ଦେବ । ଏହିପରି କରି ହାଣ୍ଡିମୁହଁ ଘୋଡ଼ାଇ ଅଳ୍ପକ୍ଷଣ ଜାଳ ଦେଲେ ଚାଉଳ ଫୁଟିବାର ଆରମ୍ଭ ହେବ । ଦଣ୍ଡକୁଦଣ୍ଡ କରଚୁଲି କମ୍ବା ପିଠାଖଡ଼ିକାରେ

ଘାଣ୍ଟି ଦେବ, ତାହା ନ କଲେ ଖେଚଡ଼ି ଲାଗିଯିବାର ସମ୍ଭାବନା । ଲାଗିଗଲେ ଖେଚଡ଼ି ଅଖାଦ୍ୟ ହୁଏ ।

ଯେତେବେଳେ ଦେଖିବ ଡାଲିଗୁଡ଼ିକ ସୁସିଦ୍ଧ ହୋଇଅଛି, ତେ-ତେବେଳେ ଚୁଲ୍ଲୀରୁ ଜାଳ କାଢ଼ି ପକାଇ, ଜଳନ୍ତା ଅଙ୍ଗାରର ଉପ-ପରେ ହାଣ୍ଡିକୁ ବସାଇ, ଏକଛଟାଙ୍କି ଭଲ ଚିନି ଏବଂ ପାଏ ଭଲ ଦହି ହାଣ୍ଡିରେ ଢାଳି ଦେଇ ଘାଣ୍ଟି ଦେବ । ସୁବିଧା ହେଲେ ଅଧପାଏ କିସ୍-ମିସ୍ ଏକଛଟାଙ୍କି ଘିଅରେ ଭଜି ହାଣ୍ଡିରେ ପକାଇ ଘାଣ୍ଟି ଦେଇ ଚୁଲ୍ଲୀରୁ ଓହ୍ଲାଇ ରଖିବ । ପରିବେଷଣ କାଳରେ ଆଉ ଥରେ ଘାଣ୍ଟି ଦେଇ ପରିବେଷଣ କରିବ ।

ନକ୍ଷାମଣି—ଆଈ, ମୁଁ ମାଂସ ଖାଏ ନାହିଁ । ମୁଁ ଏପରି ଖେଚଡ଼ି କରି ଶିଖିବ ନାହିଁ ।

ଆଈ—ତୁମ୍ଭେ ଅପେ ନ ଖାଇବ ବୋଲି, ରାନ୍ଧି ନ ଶିଖିବ, ଏପରି ମନେ କରିବା ଅନ୍ୟାୟ । ଲୋକେ ଅନ୍ୟକୁ ଖୁଆଇବା ସକାଶେ ରାନ୍ଧି ଶିଖନ୍ତି । ଯେଉଁମାନେ ମାଂସ ନ ଖାନ୍ତି, ସେମାନଙ୍କ ସକାଶେ ମାଂସ ତ୍ୟାଗ କରି, କେବଳ ମଶଲାଦ୍ୱାରା ଜଳ ( ଯୂଷ ) ପ୍ରସ୍ତୁତ କରି ସେହି ଜଳରେ ପାକ କରିବ । ତୁମ୍ଭମାନଙ୍କୁ ପ୍ରଥମ ଏହିପରି ରୀତିରେ ପାକ କରିବାକୁ ଅଡ଼ୁଆ ଲାଗିବ; ମାତ୍ର ଥରେ ବା ଦୁଇଥର ପାକ କଲେ ତହୁଁ ଉତ୍ତାରୁ ସହଜରେ ପାକକାର୍ଯ୍ୟ କରି ପାରିବ । ପଛକୁ ମଶଲା ପ୍ରଭୃତି ଓଜନ କରି ନେଇ କାର୍ଯ୍ୟ କରିବାକୁ ହେବ ନାହିଁ, ଅନୁମାନରେ କାର୍ଯ୍ୟ କରି ପାରିବ । କେହି୨ ଖେଚଡ଼ିରେ ଡାଲି ଚାଉଳ ସମାନାଂଶରେ ବ୍ୟବହାର କରନ୍ତି । ଖେଚଡ଼ିରେ ମୁଗଡାଲି ବ୍ୟବହାର କଲେ ଘିଅ ଅଳ୍ପ ପରିମାଣରେ ଆବଶ୍ୟକ ହୁଏ, ମାତ୍ର ଖେଚଡ଼ି ସେପରି ସୁସ୍ୱାଦୁ ହୁଏ ନାହିଁ ।

# ପଲାନ୍ନ ।

ପଲାନ୍ନ ପାକ କରିବାକୁ ହେଲେ ଛାଗମାଂସ ଏକ ସେର, ଘିଅ ଅଧସେର, ପୁରୁଣା ସରୁ ଅରୁଆଚାଉଳ ଏକସେର, ଧନିଆ, ଅଦା, ଲବଙ୍ଗ, ଏବଂ ଗୋଲମରିଚ ପ୍ରତ୍ୟେକରୁ ଦୁଇ ତୋଳା; ଡାଲଚିନି ଓ ଜାଫରାନ, ପ୍ରତ୍ୟେକରୁ ଏକ ତୋଳା, ଲୁଣ ଅଢ଼େଇ ତୋଳା; ଗୁଜୁରାତି, କବାବଚିନି, ତେଜପତ୍ର, ଓ ରସୁଣ ପ୍ରତ୍ୟେକରୁ ଅଠଅଣା ଓଜନ, ଜୀରା ଦୁଇଅଣା ଓଜନ, ଏବଂ ପିଆଜ ଅଧପାଏ ସଂଗ୍ରହ କରିବ ।

ପିଆଜ, ରସୁଣ, ଏବଂ ଅଦାର ଚୋପା ଛଡ଼ାଇ ଖଣ୍ଡ୨ କରି କାଟି ରଖିବ । ଧନିଆ ଦୁଇ ତୋଳା, ପିଆଜ ଏକଛଟାଙ୍କି, ରସୁଣ ଅର୍ଦ୍ଧ ତୋଳା, ଅଦା ଏକ ତୋଳା, ଗୋଲମରିଚ ଏକତୋଳା, କବାବଚିନି ଅର୍ଦ୍ଧ ତୋଳା, ଜାଫରାନ ଅଭାବରେ ବଟା ହଳଦି ଏକତୋଳା, ଖଣ୍ଡିଏ କନାରେ ବାନ୍ଧି, ଗୋଟିଏ ତେକ୍‌ଚି କିମ୍ବା ହାଣ୍ଡିରେ ଜଳ, ମାଂସ ଓ ସେହି କନା ପୁଟୁଳିକୁ ଏକତ୍ର ସିଦ୍ଧ କରିବ । ହାଣ୍ଡିମୁହଁ ଘୋଡ଼ାଇ ରଖିବ ଏବଂ ମୃଦୁଭାବରେ ଜାଳ ଦେବ । ଜଳ ଘୂଟି ଅଳ୍ପ ଲୋହିତବର୍ଣ୍ଣ ହୋଇ ସୁଗନ୍ଧ ବାହାରିଲେ ଯୂଷ ପ୍ରସ୍ତୁତ ହେଲା ବୋଲି ଜାଣିବ । ଏହି ଜଳରେ ପଲାନ୍ନ ପାକ କରିବାକୁ ହୁଏ । ନିରାମିଷ ପଲାନ୍ନରେ ମାଂସ ବ୍ୟବହାର ନ କରି କେବଳ ଉପରୋକ୍ତ ମଶଲାଦ୍ୱାରା ଯୂଷ ପ୍ରସ୍ତୁତ କରିବ ।

ପଲାନ୍ନ ଚାଉଳ ଉତ୍ତମରୂପେ ପାଛୁଡ଼ି ବାଛିନେବ । ଚାଉଳ ଥାଳରେ ରଖି ହାତରେ ବାଛିଲେ ଭଲ ହୁଏ । ଚାଉଳ ସଙ୍ଗେ ଯେମନ୍ତ ଖୁଦ ପ୍ରଭୃତି ନ ରହେ । ପଲାନ୍ନରେ ଅଧିକ ଘିଅ ଦେବାର ଇଚ୍ଛା ନ ଥିଲେ, ଚାଉଳ ଧୋଇ ଶୁଖାଇ ନେବ । ଧୂଆଚାଉଳ ଅଧିକ ପରିମାଣରେ ଘିଅ ଟାଣି ପାରେ ନାହିଁ । ଧୂଆଠାରୁ ଅଧୂଆ ଚାଉଳରେ ଅଧିକ ଘିଅ ଦେବାକୁ ହୁଏ । ଧୂଆ ଚାଉଳରେ ବଟା ଅଦା, ବଦାମ, ପେସ୍ତା, କିସମିସ୍,

ଗୁଜୁରାଟିଦାନା, ଲବଙ୍ଗ ଏବଂ ଅଳ୍ପ ପରିମାଣରେ ଘିଅ ମିଶାଇ, ଖେଚଡି ରାନ୍ଧିଲାପରି ଯୂଷ ଜଳରେ ଅନ୍ନ ପାକ କରିବ । ଯେଉଁ ହାଣ୍ଡିରେ ପଳାନ୍ନ ରାନ୍ଧିବ, ସେହି ହାଣ୍ଡିରେ ଅଳ୍ପ ପରିମାଣରେ ଘିଅ ଢାଳି ଦେଇ, ତେଜ-ପତ୍ର ବିଛାଇ ତାହା ଉପରେ ଚାଉଳ ଦେବ । ଅଧୁଆ ଚାଉଳ ହେଲେ ଘିଅ ଓ ତେଜପତ୍ରର ସହିତ ସ୍ତର ଉପରେ ଚାଉଳ, ବାଦାମ, ପେସ୍ତା, ମାଂସ ପ୍ରଭୃତି ଦେଇ ପୁଣି ତାହା ଉପରେ ଚାଉଳ ଦେବ । ତାହା ଉପରେ ତେଜପତ୍ର ବିଛାଇ ପୂର୍ବ ପରି ଚାଉଳ ପ୍ରଭୃତି ରଖିବ । ଏହିପରି ସଜାଇ ପଛକୁ ଯୂଷ ଘିଅ ଓ ଲୁଣ ଦେଇ ହାଣ୍ଡି ମୁହଁ ଘୋଡାଇ ଦେବ ଏବଂ ଚୁଲ୍ଲୀରେ ବସାଇ ମୃଦୁ ଜାଳ ଦେବ । ଚାଉଳ ସୁସିଦ୍ଧ ନ ହେବା ପୂର୍ବରୁ, ଚୁଲ୍ଲୀରୁ ଜାଳ କାଢି ନେବ । ଚୁଲ୍ଲୀରେ ଯେଉଁ ଜ୍ୱଳନ୍ତା ଅଙ୍ଗାର ଥିବ ସେଥିରୁ କେତେକ ନେଇ ହାଣ୍ଡିରେ ଘୋଡା ହୋଇଥିବା ଶରାରେ ରଖିବ । ତଳ ଓ ଉପରୁ ଉତ୍ତାପ ପାଇ ଅନ୍ନ ସୁସିଦ୍ଧ ହେବ । ଅଧୁଆ ଚାଉଳ ହେଲେ ତାହାକୁ ଘିଅରେ ଭାଜି ନେବ । ଗୋଟାଏ ବା ଯୋଡାଏ ଚାଉଳ ଚଡ଼ ଚଡ଼ ହୋଇ ଫୁଟି ଉଠିଲେ ଚୁଲ୍ଲୀରୁ ଓହ୍ଲାଇ ଆଣି, ଯୂଷଜଳରେ ଅନ୍ନ ପାକ କରିବ ।

ପଳାନ୍ନରେ ଜାଫରାନ ଦେବାକୁ ହେଲେ ଚାଉଳ ସଙ୍ଗେ ମିଶାଇ ଦେବ କମ୍ବା ଚାଉଳ ଅର୍ଦ୍ଧସିଦ୍ଧ ହେଲା ବେଳେ, ଜାଫରାନକୁ ଦୁଧ ସଙ୍ଗେ ମିଶାଇ ହାଣ୍ଡିରେ ଢାଳି ଦେବ । ଜାଫରାନ ଅଭାବରେ ହଳଦି ଦେବ । ପଳାନ୍ନ ଡେକ୍‌ଚିରେ ପାକ କଲେ ଉତ୍ତମ ହୁଏ । ମାଟିହାଣ୍ଡିରେ ପାକ କରିବାକୁ ହେଲେ, ହାଣ୍ଡିକୁ ଧୋଇ ଚୁଲ୍ଲୀରେ ବସାଇ ଅଳ୍ପ ପରିମାଣରେ ଘିଅ ଢାଳି ଦେବ ଏବଂ ମୃଦୁଭାବରେ ଜାଳ ଦେବ । ଘିଅର ଫେଣ ମରି ଆସିଲେ ଅଳ୍ପ ଜଳ ଢାଳି ଦେଇ ଫୁଟାଇ ନେବ ।

ମାଂସର ପଲାନ୍ନ ପରି ମାଛର ପଲାନ୍ନ ମଧ୍ୟ ପ୍ରସ୍ତୁତ ହୁଏ । ରୋହି, ଖଲୁଡ଼ି, କାଳବଂଶୀ ମାଛ ପଲାନ୍ନରେ ବ୍ୟବହୃତ ହୁଏ । ବଡ଼ମାଛ ବ୍ୟତୀତ ସାନମାଛରେ ପଲାନ୍ନ ହୁଏ ନାହିଁ ।

## ଭର୍ଜିତାନ୍ନ ।

ଭର୍ଜିତାନ୍ନ ଅବା ଘୃତଭର୍ଜା ପଲାନ୍ନ ପରି ଗୁରୁପାକ ହୁଏ ନାହିଁ । ଏହା ଅଳ୍ପବ୍ୟୟ ଏବଂ ଅଳ୍ପସମୟରେ ପ୍ରସ୍ତୁତ ହୁଏ । ଅଧିକ ଜଳରେ ଅନ୍ନ ପାକ କରି ପେଜ ଉତ୍ତମରୂପେ ଗାଳି ପକାଇବ । ଗୋଟାଏ କରେଇରେ କିମ୍ବା ଡେକଚିରେ ଘିଅ ଦେଇ ଚୂଲ୍ଲୀରେ ବସାଇବ । ଘିଅର ଫେଣ ମରି ଆସିଲେ ତେଜପତ୍ର, ଲବଙ୍ଗ, ଗୁଜୁରାତିଦାନା, ବଦାମ, କିସ୍‌ମିସ୍, ଏବଂ ପେସ୍ତା ଦେଇ ପିଠାଖଣ୍ଡିକାରେ ଘାଣ୍ଟି ଦେବ । ଘିଅ ଅଳ୍ପ ଲୋହିତବର୍ଣ୍ଣ ହୋଇ ଆସିଲେ ତହିଁରେ ଅନ୍ନ ଢାଳି ଖଣ୍ଡିଏ ସରୁ କାଠି ଯୋଗେ ଧୀରେ୨ ଘାଣ୍ଟି ଦେବ । ଏହି ସମୟରେ ଖପ୍ରଢାଳ ନ ଦେଇ ମୃଦୁ ଉତ୍ତାପରେ ପାକ କରିବ । ଅନ୍ନଗୁଡ଼ିକ ଘୃତଯୁକ୍ତ ହେଲେ ଏବଂ ସେଥିରୁ ପଲାନ୍ନ ତୁଲ୍ୟ ସୁଗନ୍ଧ ବାହାରିଲେ ଚୂଲ୍ଲୀରୁ ଓହ୍ଲାଇ ନେବ । ଭର୍ଜିତାନ୍ନରେ ବଦାମ, କିସ୍‌ମିସ୍ ପ୍ରଭୃତି ନ ଦେଲେ ମଧ୍ୟ ଚଳି ପାରେ । କେହି୨ ଅନ୍ନକୁ ଅର୍ଦ୍ଧସିଦ୍ଧ କରି ପେଜ ଗାଳି ନେଇ, ପଲାନ୍ନ ପାକ କରନ୍ତି । ସେହିପରି କଲେ ଅଳ୍ପ ଘିଅରେ କାର୍ଯ୍ୟ ହୁଏ ।

ନଶାମଣି—ଅଇ, ଆଜ ଏତିକି ହେଉ, ଚାଲ ଯିବା ।



## ଚତୁର୍ଦ୍ଦଶ ସନ୍ଧ୍ୟା ।

# ଡାଲି, ଭଜି ପ୍ରଭୃତି ।

ଅଇ—ଆଜି ତୁମ୍ଭମାନଙ୍କୁ ଡାଲି ଓ ଭଜି ପ୍ରଭୃତିର କଥା କହିବ । କଞ୍ଚା ଓ ଭଙ୍ଗା ଦୁଇ ପ୍ରକାର ଡାଲି ବ୍ୟବହୃତ ହୁଏ । ନୂଆ ଟାଟକା ଭଙ୍ଗା ଡାଲି ସୁଖାଦ୍ୟ ଅଟେ । ଡାଲି ପାଣିଆ ହେଲେ ଅର୍ଥାତ୍ ଡାଲିରେ ଅଧିକ ପାଣି ରହିଲେ ସୁସ୍ୱାଦୁ ହୁଏ ନାହିଁ । ବୁଟ ଓ ହରଡ଼ ଡାଲି ଘନ ହେଲେ ଅଧିକ ସ୍ୱାଦୁ ହୁଏ । ରାନ୍ଧିବା ପୂର୍ବେ ଗେଣ୍ଡା କାଢ଼ି ପରିଷ୍କାର କରିବ । ଗେଣ୍ଡା ଥିଲେ ଡାଲି ସୁସ୍ୱାଦୁ ହୁଏ ନାହିଁ ଏବଂ ଗେଣ୍ଡା ଉଦରସ୍ଥ ହେଲେ ରୋଗ ଜାତ କରେ । ବରଡାଲିରେ ଗେଣ୍ଡା ଥିଲେ, ରାନ୍ଧିବାବେଳେ ହାଣ୍ଡିମୁହଁରେ ଖଣ୍ଡିଏ ଶସ୍ତ କ ପଲମ ଘୋଡ଼ାଇ ଦେଲେ, ଗେଣ୍ଡାସବୁ ଶସ୍ତତଳରେ ଲାଗିଯାଏ । ଥରକୁଥର ଶସ୍ତ କାଢ଼ି ସେଥିରୁ ଗେଣ୍ଡା ପରିଷ୍କାର କରି ନେଲେ, ଡାଲିରୁ ଗେଣ୍ଡାଯାକ ପରିଷ୍କାର ହୋଇଯାଏ । ଡାଲିରେ ଅଳ୍ପ ତେଲ ମଖାଇ ରାନ୍ଧିଲେ ଗେଣ୍ଡାମାନ ସହଜରେ ବାହାରିଯାଏ । ପୁରୁଣା ହରଡ଼ କମ୍ବା ବୁଟ ଡାଲି ରାନ୍ଧିବାକୁ ହେଲେ, ରାନ୍ଧିବା ପୂର୍ବେ ତେଲ କମ୍ବା ଘିଅ ଦେଇ ଅଳ୍ପ କଷି କମ୍ବା ଭଜି ନେଲେ ସହଜରେ ସିଦ୍ଧ ହେବ । ମୃଦୁ ଜାଳ ଦେଲେ ଡାଲି ସୁସିଦ୍ଧ ହୁଏ । ଡାଲି ଉତର ଉଠିଲେ ଅଳ୍ପ ପରିମାଣରେ ଘିଅ କମ୍ବା ତେଲ ହାଣ୍ଡିରେ ପକାଇ ଦେବ । ଡାଲିରେ ପ୍ରଥମ କୌଣସି ମଶଲା ଦିଆ ଯାଏ ନାହିଁ । ଉତର ଉଠିଲେ ହଳଦି ଦେବାକୁ ହୁଏ । ସୁସିଦ୍ଧ ହେଲେ ଲୁଣ, ବଟା ଲଙ୍କାମରିଚ ଓ ଜୀରାମରିଚ ଦେଇ ତହିଁ ଉତ୍ତାରୁ ବଘାରିବାକୁ ହୁଏ । ତେଲଠାରୁ ଘିଅ ଦେଇ ରାନ୍ଧିଲେ ଡାଲି ଅଧିକ ସୁସ୍ୱାଦୁ ହୁଏ । ମସୁର, ହରଡ଼, ଓ ବୁଟ ଡାଲିରେ ଘିଅ ନ ଦେଲେ

ସୁସ୍ୱାଦୁ ଲାଗେ ନାହିଁ । ସାଧାରଣରେ ତେଜପତ୍ର ଓ ଲଙ୍କାମରିଚ ଦେଇ ଡାଲି ବଘାରନ୍ତି । ମାତ୍ର ଗରମମଶଲା ଦେଲେ ଡାଲି ଅଧିକ ପରି-ମାଣରେ ସୁସ୍ୱାଦୁ ହୁଏ । କେହି ବୁଟ ଡାଲିରେ ସେହି ପ୍ରଭୃତି ମାଛର ମୁଣ୍ଡ ଦେଇ, କେହି ଅବା ହରଡ଼ ଡାଲିରେ ତେନ୍ତୁଳ କମ୍ବା ଅମ୍ବୁଲ ଦେଇ ରାନ୍ଧନ୍ତି । ଡାଲିରେ ତେନ୍ତୁଳ କମ୍ବା ଅମ୍ବୁଲ ଦେବାକୁ ହେଲେ ବଘାରିବା ପୂର୍ବରୁ ଦେବ । ବୁଟ ଡାଲିରେ ଅଳ୍ପ ପରିମାଣରେ କନ୍ଦ କମ୍ବା ଚିନି ଦେଇ ରାନ୍ଧିଲେ ଉପାଦେୟ ହୁଏ ।

ମୁଗ ଡାଲି ଭାଜିକରି ରାନ୍ଧିଲେ ଅଧିକ ସୁସ୍ୱାଦୁ ହୁଏ । ମୁଗ ଡାଲି ପାକ କରିବାକୁ ହେଲେ, ହାଣ୍ଡିରେ ଜଳ ବସାଇ ଗରମ କରିବ । ଜଳ ଫୁଟି ଉଠିଲେ ଡାଲିଗୁଡ଼ିକ ଢାଳି ଦେବ । ଉତୁରି ଆସିଲେ ହଳଦି ଦେବ । ସୁସିଦ୍ଧ ହେଲେ କରୁଛୁଲିରେ ଘାଣ୍ଟି ଦେଇ, ବଟା ଧନିଆ, ବଟା ଜୀରାମରିଚ, ବଟା ଲଙ୍କାମରିଚ ଓ ଲୁଣ ଦେବ । ତହିଁ ଉତ୍ତାରୁ ଘିଅ କମ୍ବା ତେଲରେ ତେଜପତ୍ର ଓ ଲଙ୍କାମରିଚର ଛୁଙ୍କ ଦେଇ ଥରେ ଫୁଟାଇ ନେବ । ତହିଁ ଉତ୍ତାରୁ ଘିଅ ଓ ଗରମ ମଶଲା ଦେଇ ଚୁଲ୍ଲୀରୁ ଓହ୍ଲାଇ ରଖିବ । ମୁଗଡାଲି ପରି ହରଡ଼ ଏବଂ ବୁଟ ଡାଲି ମଧ୍ୟ ପାକ କରିବ । ବୁଟଡାଲିରେ ଗରମମଶଲା ପ୍ରଭୃତି ଦେଲେ ତାହାର ସ୍ୱାଦ ମାଂସ ପରି ହୁଏ ।

## ଭାଜି ।

ତେଲ କମ୍ବା ଘିଅରେ କୌଣସି ଦ୍ରବ୍ୟ ଭାଜିବାକୁ ହେଲେ, ଘିଅ କମ୍ବା ତେଲକୁ ପାକପାତ୍ରରେ ପକାଇ ମୃଦୁ ଜାଳ ଦେଇ ତାହାର ଫେଣ ମରି ଗଲେ ପାକକାର୍ଯ୍ୟ କରିବ । ଭାଜିରେ ସବୁବେଳେ ମୃଦୁ ଜାଳ ଆବଶ୍ୟକ, ତୀବ୍ର ଜାଳରେ ଭାଜି ପୋଡ଼ିଯାଏ । ମାଛ ପ୍ରଭୃତି

ଭାଜିଲା ବେଳେ ଅଧିକ ପାଣିଦବ ନାହିଁ । ସେହିପରି କଲେ ତାହା ଭାଜି ଗୁଣ୍ଡା ହୋଇଯାଏ । ଗୋଟିଏ ପିଠି ଭଜା ହେଲେ ତାହାକୁ ଲେଉଟାଇ ଦେବ । ରୋଗିର ଖାଦ୍ୟଦ୍ରବ୍ୟ ଭାଜିବାକୁ ହେଲେ ଅଳ୍ପ ପରମାଣରେ ଘିଅ ଦେଇ ଭାଜିବ । ରୋଗିର ଖାଦ୍ୟଦ୍ରବ୍ୟ ପ୍ରଥମ ଜଳରେ ସିଦ୍ଧ କରି ତହିଁଉତ୍ତାରୁ ଭାଜିଲେ ଭଲ ହୁଏ । ଭାଜି ପ୍ରଭୃତି ଅଧିକ ତେଲ କମ୍ବା ଘିଅରେ ଭାଜିଲେ ଯେପରି ସୁଖାଦ୍ୟ ହୁଏ ଅଳ୍ପ ଘିଅ କମ୍ବା ତେଲରେ ସେପରି ହୁଏ ନାହିଁ ।

ବାଇଗଣ ଭାଜିବାକୁ ହେଲେ, ଚକ୍ତି କରି କାଟି ଧୋଇ ପକାଇବ । ତହିଁ ଉତ୍ତାରୁ ଲୁଣ ଓ ହଳଦି ମଖାଇ ତେଲ କମ୍ବା ଘିଅରେ ଭାଜିନେବ । ବଡ଼ି ଭାଜିବାକୁ ହେଲେ, ତେଲ କମ୍ବା ଘିଅର ଫେଣ ମରି ଆସିଲେ ପାକପାତ୍ରରେ ପକାଇ ଅନବରତ ଖରଡ଼ି ଦେବ । ତାହା ନ କଲେ ପୋଡ଼ି ଯିବ । ବଡ଼ି ଲୋହିତବର୍ଣ୍ଣ ହେଲେ ଚୂଲ୍ଲୀରୁ ଓହ୍ଲାଇ ରଖିବ । ପଟୋଳ ଭାଜିବାକୁ ହେଲେ, ତାହାର ଚୋପା ଡାଚ୍ଛି ପକାଇ ଲମ୍ୱଭାବରେ ଦୁଇ ଖଣ୍ଡ କରି ଏବଂ ଲୁଣ ଓ ହଳଦି ମଖାଇ ଭାଜିବ । ଶାଗଭାଜି କରିବାକୁ ହେଲେ, ଶାଗକୁ ବାଛି, କାଟି ଅଧିକ ଜଳରେ ଭସାଇ ଧୋଇ ନେବ । ପାକପାତ୍ରରେ ତେଲ କମ୍ବା ଘିଅ ଦେଇ ଚୂଲ୍ଲୀରେ ବସାଇବ । ଫେଣ ମରି ଅସିଲେ ଲଙ୍କାମରିଚ ଛୁଙ୍କ ଦେଇ ଶାଗଗୁଡ଼ିକ ପକାଇ ତାଙ୍ଗରେ ଘାଣ୍ଟି ଦେବ । ଶାଗରୁ ପ୍ରଚୁର ଜଳ ବାହାରେ, ଏଣୁ ଜଳ ଦେବାର ଆବଶ୍ୟକ ହୁଏ ନାହିଁ । ଶାଗ ଅର୍ଦ୍ଧସିଦ୍ଧ ହୋଇ ଅସିଲେ ଲୁଣ ପକାଇବ । ସୁସିଦ୍ଧ ହେଲେ ଚୂଲ୍ଲୀରୁ ଓହ୍ଲାଇ ରଖିବ ।

ବାଇଗଣ, ପଟୋଳ, କଞ୍ଚା ଅଳୁ, କାଙ୍କଡ଼ ପ୍ରଭୃତି ଭାତରେ ଦେଇ ଚଟୁଣି କରି ଖାନ୍ତି । ଡାଲି ଭାତରେ ଦେବାକୁ ହେଲେ, ଖଣ୍ଡିଏ

କନାରେ ବାନ୍ଧି ଘୃତରେ ଦେବ । ଘୃତହାଣ୍ଡି ଚୁଲୀରୁ ଓହ୍ଲାଇ, କନାପୁଟୁଳି କାଢ଼ି, ଲୁଣ, ଲଙ୍କାମରିଚ, ତେଲ କିମ୍ବା ଘିଅ ଦେଇ ଚଟ୍ଣି କରିବ । ବଡ଼ି ଘୃତରେ ଦେବାକୁ ହେଲେ, ନିଆଁରେ ପୋଡ଼ି ନେଇ ଘୃତ ଫୁଟୁଥିବା ବେଳେ ଦେବ ।

କୌଣସି ପରିବା ପୋଡ଼ିବାକୁ ହେଲେ ଜ୍ୱଳନ୍ତ ଅଙ୍ଗାରରେ ପୋତି ଦେଇ ପୋଡ଼ିବ । ବାଇଗଣରେ ତେଲ ଲଗାଇ ପୋଡ଼ିଲେ ଶୀଘ୍ର ସିଦ୍ଧ ହୁଏ । ପୋଡ଼ିବା ଦ୍ରବ୍ୟ ନିଆଁରୁ କାଢ଼ି ଚୋପା ପ୍ରଭୃତି ଛଡ଼ାଇ ପରିଷ୍କାର କରି ଚକଟିବ । ତହିଁ ଉପରୁ ତେଲ କିମ୍ବା ଘିଅ, ଲୁଣ ଏବଂ ଇଚ୍ଛାନୁସାରେ ଲଙ୍କାମରିଚ ପ୍ରଭୃତି ଦେବ । ବାଇଗଣପୋଡ଼ା ଲୁଣ ଦେଇ ଚକଟି ଘିଅ, ଲଙ୍କାମରିଚ ଓ ପିଆଜ ଦେଇ ଛୁଙ୍କି ନେଲେ ଅଧିକ ରୁଚିକର ହୁଏ ।

## ବ୍ୟଞ୍ଜନ ।

କେହି୨ ଏପରି ମନେ କରନ୍ତି ଯେ ଅଧିକ ପରିମାଣରେ ଘିଅ ଏବଂ ମସଲା ଦେଇ ରାନ୍ଧିଲେ ତରକାରି ଉତ୍ତମ ହୁଏ । ମାତ୍ର ତାହା ସେମାନଙ୍କର ସମ୍ପୂର୍ଣ୍ଣ ଭ୍ରମ ଅଟେ । ଯେ ଅଳ୍ପ ଘିଅ ଓ ମସଲାରେ ଭଲ ତରକାରି ରାନ୍ଧି ପାରନ୍ତି ତାହାଙ୍କୁ ଉତ୍କୃଷ୍ଟ ରାନ୍ଧୁଣୀ ବୋଲି ଜାଣିବ । ବ୍ୟଞ୍ଜନରେ ପରିମିତ ପରିମାଣରେ ଲୁଣ ଓ ମସଲା ଦେଲେ ସୁସ୍ୱାଦୁ ହୁଏ । ପରିବାକୁ ପ୍ରଥମେ ଅଳ୍ପ ଘିଅ କିମ୍ବା ତେଲ ଦେଇ କଷି ନେଇ ରାନ୍ଧିଲେ ସାଧାରଣତଃ ବ୍ୟଞ୍ଜନ ଭଲ ହୁଏ । ବ୍ୟଞ୍ଜନରେ ଜଳଭାଗ ଅଧିକ ହେଲେ ପାଣିଚିଆ ଲାଗେ । ବ୍ୟଞ୍ଜନ ପାଣିଚିଆ ହେଲେ ପିଠଉ କିମ୍ବା ମଇଦା ଗୋଳି ମିଶାଇ ଦେଇ ଫୁଟାଇ ନେଲେ ବ୍ୟଞ୍ଜନର ଜଳ ମରି ଯାଏ । ମାତ୍ର ତାହା ପରିମିତ ଜଳରେ ପାକ ହୋଇଥିବା ବ୍ୟଞ୍ଜନ ପରି ସୁସ୍ୱାଦୁ ହୁଏ ନାହିଁ ।

ବ୍ୟଞ୍ଜନରେ ପରିମିତ ପରିମାଣରେ ଗରମମଶଲା ଦେବ । ଅଧିକ ପରିମାଣରେ ଗରମମଶଲା ଦେଲେ ବ୍ୟଞ୍ଜନ ବିସ୍ୱାଦ ହୁଏ । ବ୍ୟଞ୍ଜନରେ ଗରମମଶଲା ଦେଇ ଜାଳ ଦେଲେ ମଶଲାର ଗନ୍ଧ ନଷ୍ଟ ହୁଏ ଏବଂ ବ୍ୟଞ୍ଜନର ସ୍ୱାଦ ମଧ୍ୟ ବିକୃତ ହୁଏ । ବ୍ୟଞ୍ଜନ ରନ୍ଧାରି ଘଷାଘଷି କରିବ ନାହିଁ । ସେହିପରି କଲେ ପାଣିଆଣ ବିକୃତ ହୋଇ ଯାଏ । ବ୍ୟଞ୍ଜନ ପାକ ଉତ୍ତାରୁ ପୃଥକ୍ ପାତ୍ରରେ ଘୋଡ଼ାଇ ରଖିଲେ ବହୁକ୍ଷଣ ଉତ୍ତମ ଅବସ୍ଥାରେ ରହିବ । କୌଣସି ବ୍ୟଞ୍ଜନ ଅଘଡ଼ା ରଖିବ ନାହିଁ । ବ୍ୟଞ୍ଜନ ରନ୍ଧା ହେଲା ଉତ୍ତାରୁ ପାକପାତ୍ର ଧୋଇ ରଖିବ ।

## ମାଛଝୋଳ ।

ମାଛ ଝୋଳରେ ବାଇଗଣ, ପଟୋଳ, କଦଳୀ, ବିଲାତି ଆଳୁ, ପଣସମଞ୍ଜି, ଓଲକୋବି ପ୍ରଭୃତି ବ୍ୟବହୃତ ହୁଏ । ଝୋଳ କରିବା ମାଛ କାଟି ଧୋଇ, ଲୁଣ ହଳଦି ମାଖି ଭାଜିବ । ତହିଁ ଉତ୍ତାରୁ ଝୋଳ ରାନ୍ଧିବ ।

ହଳଦି, ଜୀରାମରିଚ, ଧନିଆ, ଲଙ୍କାମରିଚ, ପିଆଜ ଦେଇ ମାଛର ଝୋଳ ରାନ୍ଧନ୍ତି । କେହି୨ ସୋରିଷ ମଧ୍ୟ ବ୍ୟବହାର କରନ୍ତି । ଅଧିକ ପରିମାଣରେ ଘିଅ ଏବଂ ଗରମମଶଲା ଦେଇ ବିଲାତି ଆଳୁ ସଙ୍ଗେ ମାଛର ଝୋଳ ରାନ୍ଧି ଅଳ୍ପ ପରିମାଣରେ ଝୋଳ ରଖିଲେ ତାହାକୁ କାଲିଆ କହନ୍ତି ।

ମାଛର ଝୋଳ ରାନ୍ଧିବାକୁ ହେଲେ, କଞ୍ଚା ପରିବାମାନଙ୍କୁ ପ୍ରଥମ ଘିଅ କିମ୍ବା ତେଲରେ କଷି ନେବ । ତହିଁ ଉତ୍ତାରୁ ବଟା ହଳଦି, ବଟା ଜୀରାମରିଚ, ବଟା ଧନିଆ, ଓ ବଟା ଲଙ୍କାମରିଚ ଜଳରେ ଗୋଳି

ହାଣ୍ଡିରେ ଦେଇ ଚୂଲ୍ଲୀରେ ବସାଇବ । ଫୁଟି ଆସିଲେ ପରିବାଗୁଡ଼ିକ ଦେବ । କଛକ୍ଷଣ ଉତ୍ତାରୁ ଭଜା ମାଛ ଓ ଲୁଣ ଦେଇ ହାଣ୍ଡିମୁହଁ ଘୋଡ଼ାଇ ଦେବ । ପରବା ସୁସିଦ୍ଧ ହୋଇ ଜଳ ମରି ଆସିଲେ, ଚୂଲ୍ଲୀରୁ ଓହ୍ଲାଇ ଅନ୍ୟ ପାତ୍ରରେ ଢାଳି ରଖିବ । ଅନ୍ୟ ଗୋଟିଏ ପାତ୍ରରେ ତେଲ ଦେଇ ଚୂଲ୍ଲୀରେ ବସାଇବ । ତେଲର ଫେଣ ମରି ଆସିଲେ ଲଙ୍କାମରଚ, ତେଜପତ୍ର, ଓ ପିଆଜ ଦେଇ ଖରଡ଼ି ଦେବ । ତାହା ପୋଡ଼ିଗନ୍ଧ ପରି ହେଲେ ହାଣ୍ଡିଫୁଟା ଦେଇ ବ୍ୟଞ୍ଜନକୁ ଛୁଙ୍କି ନେବ । ଏହି ସମୟରେ ଡାଙ୍ଗ ମାରି ବ୍ୟଞ୍ଜନକୁ ଘାଣ୍ଟି ଦେବ । ଥରେ କି ଦୁଇ ଥର ଫୁଟି ଆସିଲେ ଚୁଲ୍ଲିରୁ ଓହ୍ଲାଇ ରଖିବ । ଝୋଳର ପରିମାଣ ଅଧିକ ହେଲେ ପିଠଉ କମ୍ବା ମଇଦା ଗୋଳି ଘାଣ୍ଟି ଦେବ । ତହିଁ-ଉତ୍ତାରୁ ଗରମ ମଶଲାର ଗୁଣ୍ଡ ଥିଲେ ପକାଇ ଘାଣ୍ଟି ଦେଇ ଘୋଡ଼ାଇ ରଖିବ ।

## ମାଂସଝୋଳ ।

ଉଦ୍ଭିଦ ଦ୍ରବ୍ୟଠାରୁ ମାଂସ ସହଜରେ ଜୀର୍ଣ୍ଣ ହୁଏ । ପାକ କରିବା ପୂର୍ବରୁ ମାଂସ ଉତ୍ତମ କି ନା ବଗୃର କରି ଦେଖିବ । ମାଂସର ବର୍ଣ୍ଣ ଫିକା ନୀଲ ହେଲେ ଜାଣିବ ଯେ ପଶୁର କୌଣସି ପ୍ରକାର ରୋଗ ଥିଲା । ବର୍ଣ୍ଣ ବାଇଗଣୀ ହେଲେ ଜାଣିବ ପଶୁ ଜ୍ୱର ପ୍ରଭୃତି ରୋଗରେ ମରିଅଛି । ଉତ୍ତମ ମାଂସର ଉପରିଭାଗର ବର୍ଣ୍ଣ ଧଳା ହୁଏ । ଉତ୍ତମ ମାଂସରେ ହାତ ଦେଲେ ହାତକୁ ରବର ପରି ଲାଗିବ ଏବଂ ହାତରେ ଜଳ ଲାଗିବ ନାହିଁ । ଦୂଷିତ ମାଂସରୁ ଏକପ୍ରକାର ଅପ୍ରୀତିକର ଗନ୍ଧ ବାହାରେ, ମାତ୍ର ଉତ୍ତମ ମାଂସରୁ ସେପରି ବାହାରେ ନାହିଁ । ଦିନେ ଦୁଇ ଦିନ ରଖିଦେଲେ ଉତ୍ତମ ମାଂସରୁ ପାଣି ନ ଜଗିଡ଼ି କ୍ରମଶଃ ଶୁଖିଯାଏ । ପାକ କଲେ ଉତ୍ତମ ମାଂସ ଅଧିକ ଉଣା ହୁଏ ନାହିଁ ।

ପାକ କରିବା ପୂର୍ବେ ମାଂସକୁ ଉତ୍ତମରୂପେ ଧୋଇ ଚୂପୁଡ଼ି ଗୋଟିଏ ପାତ୍ରରେ ରଖିବ । ତହିଁ ଉତ୍ତାରୁ ପରିମାଣ ଅନୁସାରେ ଦହି, ବଟା ଅଦା, ବଟା ପିଆଜ, ବଟା ଧନିଆ ଏବଂ ହଳଦି ଗୋଳାଇ ଦେବ । ପାକପାତ୍ରରେ ଘିଅ ଦେଇ ଚୂଲ୍ଲୀରେ ବସାଇ ତେଜପତ୍ର ଓ ଲଙ୍କାମରିଚର ଛୁଙ୍କ ଦେଇ ମାଂସ ଡାଳି ଦେବ । ଏହି ସମୟରେ ମାଂସକୁ ଅନବରତ ଖରଡ଼ି ଦେଉଥିବ । ଏହିପରି କଲେ ମାଂସ ଦେହରୁ ଯେଉଁ ଜଳ ବାହାରିବ, ମୃଦୁଜାଳ ଦେଇ ସେହି ଜଳକୁ ମାଂସ ଦେହରେ ମାରି ଦେବ । ତାହା ଉତ୍ତାରୁ ପରିମାଣାନୁସାରେ ଜଳ ଦେଇ ପାକପାତ୍ରର ମୁହଁ ଘୋଡ଼ାଇ ଦେବ । ଏହିପରି ସିଦ୍ଧ ହେଲା ଉତ୍ତାରୁ ପାତ୍ରରୁ ଖଣ୍ଡିଏ ମାଂସ ଆଣି, ଜଳରେ ପକାଇ ଶୀତଳ ହେଲେ କଣ୍ଟା ଦେହରୁ ମାଂସ ସହଜରେ ଫିଟି ଯାଉଅଛି କି ନାହିଁ ଟିପି ଦେଖିବ । ସେହିପରି ହେଲେ ଜାଣିବ ମାଂସ ସିଦ୍ଧ ହୋଇଅଛି । ତାହା ଉତ୍ତାରୁ ବଟା ଜୀରା-ମରିଚ ଏବଂ ଲୁଣ ଦେଇ ଚୂଲ୍ଲୀରୁ ଓହ୍ଲାଇ ରଖିବ ।

ଆଉ ଗୋଟିଏ ପାକପାତ୍ରରେ ଘିଅ ଦେଇ ଚୂଲ୍ଲୀରେ ବସାଇ ତେଜପତ୍ର, ଗୁଜୁରାତିଦାନା, ଡାଳଚିନିଖଣ୍ଡ, ଲଙ୍କାମରିଚ ଏବଂ ଲବଙ୍ଗ ଦେଇ ମାଂସକୁ ବଘାରି ନେବ । ତାହା ଉତ୍ତାରୁ ଘଣ୍ଟାଏ କି ଦୁଇଘଣ୍ଟା ପର୍ଯ୍ୟନ୍ତ ଚୂଲ୍ଲୀ ଉପରେ ରଖି ଓହ୍ଲାଇ ଆଣି ଗରମମଶଲା ଦେବ ।

ପଦ୍ମାବତୀ—ଆଇ, ଆଜି ଏତିକି ହେଉ, ଗଳ୍ପ ଶୋଇବା ।



## ପଞ୍ଚଦଶ ସନ୍ଧ୍ୟା ।

## ଦୁଗ୍ଧ ।

ଲୀଳାବତୀ—ଅଈ, କ୍ଷୀରଡ଼ି କପରି କରନ୍ତି ?

ଅଈ—ଅଚ୍ଛା, ଆଜି ତୁମ୍ଭମାନଙ୍କୁ ଦୁଧ କଥା କହିବି । ସେଥିସଙ୍ଗେ ଦୁଧରୁ କ୍ଷୀରଡ଼ି ପ୍ରଭୃତି ଯାହା୨ ପ୍ରସ୍ତୁତ ହୁଏ ତାହା ମଧ୍ୟ କହିବି, ଶୁଣ । ଅମ୍ଭମାନଙ୍କର ଯେତେପ୍ରକାର ଖାଦ୍ୟଦ୍ରବ୍ୟ ଅଛି, ତନ୍ମଧ୍ୟରେ ଦୁଧ ସବୁଠାରୁ ପୁଷ୍ଟିକର ଅଟେ । ତଟକା ନିର୍ମଳ ଦୁଧ ପାନ କଲେ ବିଶେଷ ଉପକାର ହୁଏ । ଦୁଗ୍ଧପାତ୍ର ସର୍ବଦା ପରିଷ୍କାର ନ ରଖିଲେ, ଦୁଗ୍ଧ ନଷ୍ଟ ଅବା ବିକୃତ ହୁଏ । ବିକୃତ ଦୁଗ୍ଧ ପାନ କଲେ ଶରୀରର ଅପକାର ହୁଏ । ଜଳ ମିଶିଥିବା ଦୁଧରେ ସର ପଡ଼େ ନାହିଁ । ଯେଉଁ ଦୁଧରେ ଜଳ ମିଶି ନ ଥାଏ ସେଥିରେ ଅଧିକପରିମାଣରେ ସର ପଡ଼େ ।

ଅଉଟିବା ପୂର୍ବେ ଦୁଧକୁ ଲୁଗାରେ ଛାଣି କଡ଼ାଇରେ ଅବା ହାଣ୍ଡିରେ ଢାଳି ଦେବ । ମୃଦୁଜାଳ ଦେଇ ଦୁଧ ଅଉଟିବ । ଅଉଟିଲାବେଳେ ସର୍ବଦା ଦୁଧରେ କରଚୁଲ ମାରୁଥିବ । ପିଲା ଅବା ରୋଗିମାନଙ୍କୁ ଅଧିକ ଅଉଟା ଦୁଧ ଦେବ ନାହିଁ । ଦୁଧ ଥରେ କି ଦୁଇଥର ଉତର ଆସିଲେ ପିଲା ଓ ରୋଗିମାନଙ୍କ ସକାଶେ କାଢ଼ି ରଖିବ । ଦୁଧ ଅଧିକ ଅଉଟା ହେଲେ ଘନ ହୋଇ ଗୁରୁପାକ ହୁଏ । ଦୁଧ ଅଉଟି ସାରି ଅନ୍ୟ ପାତ୍ରରେ ଘୋଡ଼ାଇ ରଖିବ ।

## ଦହି ।

ଦୁଧ ଅଳ୍ପ ଗରମ ଥିବା ବେଳେ ଅଳ୍ପ ପରିମାଣରେ ଦହି, ଛେନା-ପାଣି ଅବା ତେନ୍ତୁଳି ମିଶାଇ ରଖିଲେ ତାହା ଘନ ହୋଇ ଦହି ହୁଏ । ଯେଉଁ ଅମ୍ଳରସଦ୍ୱାରା ଦହି ହୁଏ ତାହାକୁ ମହି କହନ୍ତି । ଦୁଧରେ ବିଳ

ଅବା ଛନ୍ଦ ଦେଇ ଅଉଟି ଦହି କଲେ ତାହାକୁ ମିଠାଦହି କହନ୍ତି । ଦୁଧକୁ ଯେତେ ଅଧିକ ପରିମାଣରେ ଅଉଟି ଦହି କରିବ ତାହା ସେହି ପରିମାଣରେ ସୁସ୍ୱାଦୁ ହେବ । ଅବସ୍ଥାନୁସାରେ ଦହିର ନାମ ଘୋଳ, ଛେଦା, ଏବଂ ବସା ହୁଏ ।

## ଛେନା ।

ଦୁଧ ଅଉଟିଲାବେଳେ ସେଥିରେ ଛେନାପାଣି କମ୍ବା ତେନ୍ତୁଳ ପ୍ରଭୃତି ଦେଇ ସାଧାରଣରେ ଛେନା ପ୍ରସ୍ତୁତ କରନ୍ତି । ମାତ୍ର ତାହା ସେପରି ଉତ୍ତମ ହୁଏ ନାହିଁ । ଛେନା ପ୍ରସ୍ତୁତ କରିବାର ଗୋଟିଏ ଉପାୟ କହୁ-ଅଛୁ ଶୁଣ । ଦୁଧ ଅଉଟି୨ ଅଳ୍ପପରିମାଣରେ ଘନ ହୋଇ ଆସିଲେ ଚୁଲ୍ଲୀରୁ ଓହ୍ଲାଇ ରଖିବ । ଗୋଟାଏ ହାଣ୍ଡି ମୁହଁରେ ଖଣ୍ଡିଏ ପରିଷ୍କୃତ ମୋଟ ଲୁଗା କୋହଳ କରି ବାନ୍ଧି ଦେବ । ହାଣ୍ଡି ମୁହଁରେ ବନ୍ଧା ହୋଇ-ଥିବା ଲୁଗା ଉପରେ ଅଳ୍ପ ପରିମାଣରେ ଛେନାପାଣି ଛିଞ୍ଚିଦେଇ, ତାହା ଉପରେ କେତେକ ପରିମାଣରେ ଗରମ ଦୁଧ ଢାଳି ଦେବ । ପୁଣି ସେହି ଦୁଧ ଉପରେ ଛେନାପାଣି ଛିଞ୍ଚି ଦେଇ ପୁଣି କେତେକ ପରି-ମାଣରେ ଦୁଧ ଢାଳି ଦେବ । ଏହିପରି ସବୁ ଦୁଧଯାକ ଢାଳିଦେଲେ ତାହା ବସିଯାଇ ଘନ ହେବ । ତାହା ଉତ୍ତାରୁ ତାହାକୁ ସେହି ଲୁଗା-ରେ ଟିଳା କରି ପୁଟୁଳି ବାନ୍ଧି ଗୋଟିଏ ଜଳପୂର୍ଣ୍ଣ ହାଣ୍ଡିରେ ବୁଡ଼ାଇ ରଖିବ । ଏହିପରି ତିନି ଚାରିଘଣ୍ଟା ରଖି ଜଳରୁ ଆଣି ଦେଖିବ ତାହା ଫୁଲିଯାଇ ଚେନାଏ ଉତ୍କୃଷ୍ଟ ଛେନା ହୋଇଅଛି । ଏହି ଉପାୟରେ ଦୁଧରୁ ଅଧିକ ପରିମାଣରେ ଛେନା ବାହାରେ । କେହି୨ ଦହିରୁ ମଧ୍ୟ ଛେନା ପ୍ରସ୍ତୁତ କରନ୍ତି, ମାତ୍ର ତାହା ଉତ୍ତମ ହୁଏ ନାହିଁ ।

## ସର ।

ଦୁଧ ଅଉଟିଲା ବେଳେ ପିଠାଖଡ଼ିକାରେ ଅନବରତ ଘାଣ୍ଟି

ଦେଉଁ ଯେତେବେଳେ ଦେଖିବ ଦୁଧ ଘନ ହୋଇ ଆସୁଅଛି ସେତେ-ବେଳେ ଚୂଲ୍ଲୀରୁ ଜାଳ କାଢି ଦେଇ, କେବଳ ନିଆଁ ଧାସରେ ବସାଇ ରଖିବ । ଏହା ଉତ୍ତାରୁ ଆଉ ଘାଣ୍ଟିବ ନାହିଁ । ଏହିପରି କିଛିକ୍ଷଣ ରଖିଲେ ଦୁଧ ଉପରେ ଖଣ୍ଡିଏ ମୋଟ ସର ପଡ଼ିବ । ଏହାକୁ ଧୀରେ ଉଠାଇ ନେଲେ ସର ପ୍ରସ୍ତୁତ ହେଲା ।

## କ୍ଷୀର ।

ଦୁଧକୁ ମାରି ଘନ କଲେ କ୍ଷୀର ହୁଏ । କ୍ଷୀର ଅତ୍ୟନ୍ତ ଗୁରୁପାକ ଦ୍ରବ୍ୟ । ଯେଉଁମାନଙ୍କର ଉଦରରୋଗ ଅଛି ସେମାନଙ୍କ ପକ୍ଷରେ କ୍ଷୀର ଅତ୍ୟନ୍ତ ଅହିତକାରୀ । ଦୁଧରେ ଚିନି ଦେଇ କ୍ଷୀର ପ୍ରସ୍ତୁତ କଲେ ଅଧିକ ସ୍ୱାଦୁ ହୁଏ । କେହି ଦୁଧରେ ଚିନି ଏବଂ ଅଗ୍ରୁଟ ଦେଇ ଅତି କ୍ଷୀରପରି ଘନ କରି ଉପାଦେୟ ଖାଦ୍ୟ ପ୍ରସ୍ତୁତ କରନ୍ତି ।

## ରାବଡ଼ି ।

ଅଉଟା ହେଲା ବେଳେ ଦୁଧକୁ ପଙ୍ଖାରେ ଅନବରତ ବିଞ୍ଚିଲେ ଦୁଧ-ରେ ସର ପଡ଼ିଯାଏ । ଖଣ୍ଡିଏ ସରୁ କାଠି ଯୋଗେ ସରକୁ ଉଠାଇ କରେଇ ଗୁରପାଖରେ ଲଗାଇ ରଖିବ । ବେଳେ ପିଠାଖଡ଼ିକାରେ ଦୁଧକୁ ଘାଣ୍ଟି ଦେଉଥିବ । ଏହିପରି ସବୁଯାକ ଦୁଧର ସର ଉଠାଇ ନେଇ କରେଇରେ ଅଳ୍ପ ପରିମାଣ ଦୁଧ ଥାଉଁ କରେଇକୁ ଚୂଲ୍ଲୀରୁ ଓହ୍ଲାଇ ରଖିବ । ତାହା ଉତ୍ତାରୁ ପିଠାଖଡ଼ିକାରେ ତାଳି, ସବୁ ସର, ଦୁଧ, ଏବଂ ପରିମାଣାନୁସାରେ ଚିନି ମିଶାଇ ଘାଣ୍ଟିଦେଲେ ରାବଡ଼ି ପ୍ରସ୍ତୁତ ହେଲା ।

## ଲହୁଣୀ ।

ଦୁଧ ଅବା ଦହି ମନ୍ଥିଲେ ଲହୁଣୀ ପ୍ରସ୍ତୁତ ହୁଏ । ଲହୁଣୀ କାଢ଼ି

ତାହାକୁ ଉତ୍ତମରୂପେ ଧୋଇ ଓ ଫେଣ୍ଟି ନେଲେ ତଟକା ରହେ ଏବଂ ବିସ୍ୱାଦ ହୁଏ ନାହିଁ । ଲୁଣ ମିଶାଇ ରଖିଲେ ଲହୁଣୀ ଅଧିକ କ୍ଷଣ ତଟକା ରହେ । ପବନ ନ ଲାଗିବ ଏପରି ଭାବରେ ପାତ୍ରରେ ଘୋଡ଼ାଇ ରଖିଲେ ମଧ୍ୟ ଲହୁଣୀ ତଟକା ରହେ ।

## ଘୃତ ।

ଲହୁଣୀ ମାରି ଘିଅ ପ୍ରସ୍ତୁତ କରନ୍ତି । ଗୁଆ ଓ ମଇଁଷୀ ଦୁଇ ପ୍ରକାର ଘିଅ ବ୍ୟବହୃତ ହୁଏ । ମଇଁଷୀ ଘିଅଠାରୁ ଗୁଆ ଘିଅ ଅଧିକ ଉପାଦେୟ ଅଟେ । ଲେମ୍ବୁପତ୍ର କିମ୍ବା ପାନ ଦେଇ ଫୁଟାଇ ନେଲେ ବିକୃତ ଘିଅ ଶୋଧିତ ହୁଏ । ଫୁଟନ୍ତା ଘିଅରେ ଦହି ପକାଇ ଫୁଟାଇ ନେଲେ ମଧ୍ୟ ଶୋଧିତ ହୁଏ ।

## ପାୟସ ।

ଲୀଳାବତୀ—ଆଇ, ପାୟସ କିପରି କରନ୍ତି ?

ଅଈ—ପାୟସ ଅବା ପରମାନ୍ନ ଦୁଧରେ ପ୍ରସ୍ତୁତ ହୁଏ । ପାୟସ ପାକ କରିବାକୁ ହେଲେ ନିର୍ଜଳା ଦୁଧରେ କରିବ । ପାଣିମିଶା ଦୁଧରେ ପାୟସ କଲେ ସେପରି ସୁସ୍ୱାଦୁ ହୁଏ ନାହିଁ । ଦାନାଦାର ସରୁ ଅରୁଆ ଚାଉଳ ପାୟସରେ ପକାଇବ । ଚାଉଳକୁ ଉତ୍ତମରୂପେ ବାଛି, ଘିଅରେ ଭାଜି ଦୁଧରେ ପକାଇବ । ଚାଉଳ ସିଦ୍ଧ ହେଲେ ଚିନି ଅବା କନ୍ଦ ଏବଂ ଅଳାଇଚଦାନା, କର୍ପୂର ପକାଇ ଚୁଲ୍ଲୀରୁ ଓହ୍ଲାଇ ରଖିବ । ପାୟସରେ ବଦାମ, କିସ୍‌ମିସ୍, ଏବଂ ପେସ୍ତା ଦେଲେ ଅଧିକ ଉପାଦେୟ ହୁଏ । ପାୟସ ପାକ କଲାବେଳେ ଅନବରତ କରଚୁଲ ଦ୍ୱାରା ଘାଣ୍ଟି ଦେଉଥିବ । ତାହା ନ କଲେ ଲାଗିଯାଇ ପାୟସ ଅଖାଦ୍ୟ ହୁଏ । ଚାଉଳ ବ୍ୟତୀତ ଚୂଡ଼ା, ସୁଜି, ସାଗୁ, କପି ପାଣିକଖାରୁ ପ୍ରଭୃତି ଦେଇ ମଧ୍ୟ ପରମାନ୍ନ ପ୍ରସ୍ତୁତ କରନ୍ତି ।

ସୁଜିର ପାୟସ କରିବାକୁ ହେଲେ, ସୁଜିକୁ ଘିଅରେ ଭାଜି ନେଇ ଦୁଧକୁ ଅଉଟି ଅଧେ ମାରି, ସେଥିରେ ସୁଜି ଓ ଚିନି ପକାଇ ଅନବରତ ଘାଣ୍ଟିବ । ତାହା ନ କଲେ ସୁଜି ବସି ଯାଇ ଲାଗିଯିବ । ଘନ ହୋଇ ଆସିଲେ ଅଳେଇଚଚୂର୍ଣ୍ଣ ଏବଂ କର୍ପୂର ଦେଇ ଓହ୍ଲାଇ ରଖିବ ।

ଲାଉର ପାୟସ କରିବାକୁ ହେଲେ, କଷିଲାଉ ଆଣି ଭଲ କରି ତାହାର ଚୋପା ଛଡ଼ାଇ କାଟି, ତାହାର ଅନ୍ତ କାଢ଼ି ଦେବ । ତାହା ଉତ୍ତାରୁ ଖୁବ ସରୁ ସରୁ କରି କାଟି, ଲୁଗାରେ ଚିପୁଡ଼ି ପାଣି ନିଗାଡ଼ି ନେବ । ଚୁଲ୍ଲୀରେ ଦୁଧ ବସାଇ ଅଧେ ମାରି, ସେହି ଲାଉ ଏବଂ ଚିନି ପକାଇବ । ବହଳିଆ ହୋଇ ଆସିଲେ ଚୁଲ୍ଲୀରୁ ଓହ୍ଲାଇ ଅଳେଇଚଚୂର୍ଣ୍ଣ ଏବଂ କର୍ପୂର ଦେଇ ଘୋଡ଼ାଇ ରଖିବ ।

ଆଜି ଏତିକି ହେଉ, ଚାଲ ଯିବା ।



ଷୋଡ଼ଶ ସନ୍ଧ୍ୟା ।

## ରୋଟି ପୁରି ପିଠା ପ୍ରଭୃତି ।

ଅଣ—ତୁମ୍ଭେମାନେ ପୁରି କରି ଜାଣ ।

ପଦ୍ମାବତୀ—ମୁଁ ପିଠା କରି ଜାଣେ, ପୁରି କରି ଜାଣେ ନାହିଁ ।

ଅଣ—ତେବେ ଆଗେ ରୋଟି କଥା ଶୁଣ । ରୋଟି ଅବା ପୁରିର ମଇଦା ଜଳରେ ଗୋଳି ଖୁବ ଦଳିବ । ଦଳିବା ଯେତେ ଅଧିକ ହେବ ରୋଟି ତେତିକି ଫୁଲିବ । ମଇଦାରେ ଅଳ୍ପ ୨ କରି ଜଳ ମିଶାଇବ, କାରଣ ପାଣିଆ ହେଲେ ରୋଟି ଭଲ ହୁଏ ନାହିଁ । ମଇଦାରେ ପ୍ରଥମ ଅଳ୍ପ ପରିମାଣରେ ଘିଅ ମଖାଇ ଜଳ ଦେଇ ଚକଟିଲେ ରୋଟି କମ୍ପା ପୁରି ଅଧିକ ସୁଖାଦ୍ୟ ହୁଏ । ମଇଦା ଖୁବ ଦଳି ଗୋଲ୍ପ ବାନ୍ଧିବ । ଗୋଲା ଅଧିକ ବଡ଼ କରିବ ନାହିଁ କି ଅଧିକ ଛୋଟ କରିବ ନାହିଁ । ଶୁଖିଲା ମଇଦାରେ ବେଲି ଗୋଲାକୁ ରୋଟି କରିବ । ବେଲିଲାବେଳେ ରୋଟି ଯେମନ୍ତ ଗୋଲ ହୁଏ, ଗୋଟିଏ ପାଖ ମୋଟ ଏବଂ ଗୋଟିଏ ପାଖ ପାତଳ ନ ହୋଇ ସମାନ ଭାବରେ ମୋଟ ହୁଏ, ତହିଁପ୍ରତି ଦୃଷ୍ଟି ରଖିବ । ତାହା ଉତ୍ତାରୁ ମୃଦୁଜାଳରେ ତାବା ଅବା କରେଇ ଗରମ କରି ତାହା ଉପରେ ଖଣ୍ଡିଏ ରୋଟି ଦେବ । ରୋଟିର ଗୋଟିଏ ପିଠି ଗରମ ହେଲେ ଓଲଟାଇ ଦେବ । ସାବଧାନ ଥିବ ଯେମନ୍ତ ପୋଡ଼ି ଅବା ଲାଗି ନ ଯାଏ । ତାବା ଉପରେ ରୋଟି ଫୁଲି ଉଠିଲା ପରି ହେଲେ, ରୋଟିକି ତାବାରୁ ନେଇ ଜଳନ୍ତା ଅଙ୍ଗାର ଉପରେ ରଖିବ । ଅଙ୍ଗାର ଉପରେ ରଖିଲା କ୍ଷଣି ଫୁଲି ଉଠିଲେ, ଚିମୁଟାରେ ଧରି ଗୋଟିଏ ପାତ୍ରରେ ରଖିବ । ରୋଟି ସେକା ହେଲେ, ଦୁଇ ଖଣ୍ଡ ରୋଟି ପୈଠ ପରସ୍ପରକୁ ଧୀରେ ୨ ଘଷିଲେ, ରୋଟିରେ ଲାଗିଥିବା ମଇଦାଗୁଣ୍ଡ

ଖଣି ପଡ଼ିବ । ତହିଁ ଉତ୍ତାରୁ ତହିଁରେ ଘିଅ ମାଖି ଦେବ । ରୋଗିକୁ ଅଧିକ ଘିଅ ଲାଗିଥିବା ରୋଟି ଖାଇବାକୁ ଦେବ ନାହିଁ । ଏଣୁ ରୋଗୀ ପକ୍ଷରେ, ରୋଟିକୁ ନିଆଁରୁ ଉଠାଇଲା କ୍ଷଣି ଜଳରେ ବୁଡ଼ାଇ ନେଇ ନିଆଁ ଧାସରେ ରଖି ଶୁଖାଇ ନେବ ଏବଂ ଘିଅହାତ ମାରି ଖାଇବାକୁ ଦେବ ।

# ପୁରି ।

ସୁଜିମଇଦାର ପରିମାଣରେ ଅଧପାଏ ବା ତିନଛଟାଙ୍କି ଘିଅ ମାଖି ପାଣି ଦେଇ ଦଳିବ । ଖୁବ ଦଳ ଗୋଲା ବାନ୍ଧିବ । ଏହି ଗୋଲାକୁ ଶୁଖିଲା ମଇଦାରେ ନ ବେଲି ଘିଅ ଦେଇ ବେଲିବ । କରେଇରେ ଘିଅ ଦେଇ ପୁରି ଛାଣିବ । କରେଇରେ ଘିଅର ପରିମାଣ ଅଧିକ ଥିଲେ ପୁରି ଅଧିକ ଫୁଲେ । କରେଇର ଘିଅ ଅଧିକ କଡ଼ା କିମ୍ବା ଅଳ୍ପ ଗରମ ହେଲେ ପୁରି ଭଲ ହୁଏ ନାହିଁ ।

# କଚୁରି ।

ବିରି, ମୁଗ, କିମ୍ବା ବୁଟ ପ୍ରଭୃତିର ଚୋପା ଛଡ଼ାଇ ପାଣିରେ ଭିଜାଇ ଦେବ । ଭିଜି ଗଲେ ଶିଳରେ ବାଟି ନେବ । ଚନ୍ଦନ ପରି ଚିକ୍କଣ କରି ନ ବାଟି ଖଣ୍ଡଖଣ୍ଡିଆ କରି ବାଟିବ କିମ୍ବା ଜଳରେ ସିଝି କରି ହାତରେ ଚକଟି ନେବ । ଏହି ବଟା କିମ୍ବା ଚକଟା ଦାନା ଘିଅରେ ଅଳ୍ପ ଭାଜି ନେବ । ତାହା ଉତ୍ତାରୁ ଲୁଣ, ମରିଚଗୁଣ୍ଡ, ଛେଚା ପାନମହୁରି ମିଶାଇବ । ଇଚ୍ଛା ହେଲେ ଲଙ୍କାମରିଚ ଗୁଣ୍ଡ କରି ମିଶାଇବ । ଚକଟା ହେବା ଉତ୍ତାରୁ ଏହି ଦାନା କାହୁଅ ପରି ହୁଏ ।

ମଇଦାରେ ଘିଅ ମାଖି ପାଣି ଦେଇ ଚକଟି ଗୋଳା ବାନ୍ଧିବ । ଏହି ଗୋଳା ମଝିରେ ଚକଟାଦାନାର ପୁର ଦେଇ, ହାତରେ ଚିପି କଚୁରି ପରି କରି ଘିଅରେ ଭାଜି ନେବ ।

## ମାଲପା ।

ମାଲପା କରିବାକୁ ହେଲେ, ମଇଦା ଜଳରେ ଗୋଳ ପରିମାଣାନୁସାରେ ଚିନି, ଅଭାବରେ ଗୁଡ଼ ମିଶାଇ ଖୁବ ଫେଣ୍ଟିବ । ମଇଦା ଜଳରେ ନ ଗୋଳି ଦୁଧରେ ଗୋଳିଲେ ଅଧିକ ଉତ୍ତମ ହୁଏ । ତାହା ଉତ୍ତାରୁ ଏହାକୁ ୧୨ ଘଣ୍ଟା ପର୍ଯ୍ୟନ୍ତ ଘୋଡ଼ାଇ ରଖିବ । ସୁବିଧା ହେଲେ ଅଳେଇଚଦାନା, ବଦାମ, ପେସ୍ତା ଛେଚି ମିଶାଇ ଦେଇ ଭଲ କରି ଫେଣ୍ଟିବ ।

କରେଇରେ ଘିଅ ଦେଇ ଜାଳଦେବ । ଘିଅର ଫେଣ ମରି ଆସିଲେ, ଗୋଟିଏ ଗିନାରେ ନେଇ, କରେଇରେ ଢାଳି ମାଲପା ଛାଣି ନେବ । ପୂରିଠାରୁ ମାଲପାରେ ଅଧିକ ଘିଅ ଆବଶ୍ୟକ ହୁଏ । ମାଲପା ପାତଳ ହେଲେ ସୁସ୍ୱାଦୁ ହୁଏ ।

## ମୋହନଭୋଗ ।

କରେଇରେ ଘିଅ ଦେଇ ସୁଜି ଭାଜିବ । ଅଳ୍ପ ଲୋହିତବର୍ଣ୍ଣ ହେବାପାଏ ସୁଜିକୁ ଅନବରତ ପିଠାଖଡ଼ିକାରେ ଖରଡ଼ୁଥିବ । ସୁଜିର ବର୍ଣ୍ଣ ସେହିପରି ହେଲେ ଦୁଧ, ଅଭାବରେ ଜଳ ଢାଳି ଦେବ । ଥରେ କି ଦୁଇଥର ଫୁଟି ଆସିଲେ, ଚିନି ପକାଇ ଘାଣ୍ଟି ଦେବ । ଖୁବ ବହଳିଆ ହେଲେ ଚୂଲିରୁ ଓହ୍ଲାଇ ରଖିବ ।

## ସରୁ ଚକୁଳି ।

ବିରିକି ଘଣ୍ଟା ପାଣିରେ ପକାଇ ଚୋପା କାଢ଼ି ନେଇ, ପାଣିରେ ପଡ଼ିଥିବା ବିରିର ଦୁଇଗୁଣ ଅରୁଆଚାଉଳ ସହିତ ମିଶାଇ ଶିଳରେ ବାଟିବ । ସେହି ପିଠଉକୁ ଜଳ ମିଶାଇ ପାତଳ କରିବ । ଖଣ୍ଡିଏ ପିଠାପଲମ ବା ପିଠାପଥୁରୀ କମ୍ବା ତାବା ମୃଦୁଜାଳରେ ଗରମ କରି,

ତାହା ଉପରେ ହଳଏ ଘିଅ ଢାଳି ତେଲ ବୁଲାଇ ନେବ । ସେହି ପିଠଉକୁ ତାବା ଉପରେ ଅଳ୍ପ ପରିମାଣରେ ଢାଳି ଦେଇ ସେହିକ୍ଷଣି ଖଣ୍ଡିଏ ପାନ ଡାଳପତ୍ରରେ ସେହି ପିଠଉକୁ, ଗୋଟ ଆକାରରେ ଚାରିଆଡ଼କୁ ମେଲାଇ ଦେବ । ପିଠାଖଣ୍ଡିକାରେ ଲେଉଟାଇ ଅରପିଠି ସିଦ୍ଧ କରି ନେଇ ପାତ୍ରରେ ରଖିବ । ବଟା ପିଠଉ ଅତି ଚିକ୍କଣ ଏବଂ ଜଳର ପରିମାଣ ଅଳ୍ପ ଅଧିକ ହେଲେ, କାଗଜପରି ପାତଳ ଚକୁଳି କରି ପାରିବ । ଉଷୁନା ଚାଉଳର ପିଠା ନରମ ଏବଂ ଅରୁଆ ଚାଉଳର ପିଠା ଶକ୍ତ ହୁଏ । ଏକଭାଗ ଅରୁଆ ଚାଉଳ ତିନଭାଗ ଉଷୁନା ଚାଉଳ ମିଶାଇ ପିଠା କଲେ ପିଠା ଭଲ ହୁଏ । ଗୋଟା ବିରି ଶୀଳରେ ଭାଙ୍ଗି ପାଣିରେ ଭିଜାଇ ଅଧିକ ଜଳରେ ଧୋଇଦେଲେ ସହଜ-ରେ ଚୋପା ଛାଡ଼ି ଯାଏ ।

ନଣାମଣି—ଆଈ, ଆଜି ଏତିକି ହଉ, ଏକା ଦିନରେ ଏତେ କଥା ମନେ ରହିବ ନାହିଁ ।

ଆଈ— ହଉ ତେବେ, ଚାଲ ଯିବା ।



### ସପ୍ତଦଶ ସନ୍ଧ୍ୟା ।

## କେତେଗୁଡ଼ିଏ ଜଳଜନ୍ତୁଙ୍କ ବିବରଣ ।

ପଦ୍ମାବତୀ—ଆଈ, ଆଜି କି କଥା କହିବ ?

ଆଈ—ଆଜି ତୁମ୍ଭମାନଙ୍କୁ କେତେଗୁଡ଼ିଏ ଜଳଚରଙ୍କ କଥା କହିବି ।











ତୁମ୍ଭେମାନେ ପୋଖରୀ ଏବଂ ନଦୀର କଇଁଛ ଦେଖିଅଛ, ମାତ୍ର ସମୁଦ୍ରରେ କେଡ଼େ ବଡ଼ ୨ କଇଁଛ ଅଛନ୍ତି ଦେଖି ନାହିଁ । ସମୁଦ୍ରରେ ଏପର ବଡ଼ ୨ କଇଁଛ ଅଛନ୍ତି ଯେ ତୁମ୍ଭେମାନେ ତିନିଜଣ ଯାକ ତାହା ପିଠି ଉପରେ ବସିଲେ, ସେ ଅନାୟାସରେ ତୁମ୍ଭମାନଙ୍କୁ ଘେନି ଯିବ । ବୃହତ୍ ସାମୁଦ୍ରିକ କଚ୍ଛପର ଦୈର୍ଘ୍ୟ ଛଅହାତ ଏବଂ ଓଜନ ୨୨ ମହଣ ପର୍ଯ୍ୟନ୍ତ ହୁଏ । ବଡ଼ ୨ କୁମ୍ଭୀର ମଧ ଏତେ ଓଜନ ହୁଅନ୍ତି ନାହିଁ । ସମୁଦ୍ରରେ ସାନ ବଡ଼ କେତେ ଜାତିର ମାଛ ଅଛନ୍ତି, ତାହା ସଖ୍ୟା କରିବା ସହଜ ନୁହଇ ।



କୁମ୍ଭୀରମାନେ ଅତ୍ୟନ୍ତ ଭୟଙ୍କର ଜୀବ । ସମୁଦ୍ରକୂଳସ୍ଥ ନଦୀ ମୁହାଣ ମାନଙ୍କରେ ଅଧିକ ସଂଖ୍ୟାରେ କୁମ୍ଭୀର ଦେଖାଯାନ୍ତି । ଏମାନଙ୍କ ହେତୁ ପ୍ରତିବର୍ଷ ଅନେକ ଗୋରୁ, ମଇଁଷ, ଓ ମନୁଷ୍ୟ ନଷ୍ଟ ହୁଅନ୍ତି । ବୟସ ବୃଦ୍ଧି ସଙ୍ଗେ କୁମ୍ଭୀରର ଆକାର କ୍ରମଶଃ ବୃଦ୍ଧି ହୁଏ । ଅଣ୍ଡାରୁ ଜନ୍ମ ହେଲାବେଳେ କୁମ୍ଭୀରର ଦୈର୍ଘ୍ୟ ଏକ ଚୁଖଣ୍ଡରୁ ଅଧିକ ନୁହଇ । ଏହି କ୍ଷୁଦ୍ର ଜୀବ କ୍ରମଶଃ ବୃଦ୍ଧିପ୍ରାପ୍ତ ହୋଇ ୧୫।୨୦ ହାତ ପର୍ଯ୍ୟନ୍ତ ଦୀର୍ଘ ହୁଅନ୍ତି । ସ୍ଥଳବିଶେଷରେ ୩୦।୪୦ ହାତ ଦୀର୍ଘର କୁମ୍ଭୀର ଦେଖା ଯାଇଅଛି । ଏମାନେ ବହୁଶତବର୍ଷ ପର୍ଯ୍ୟନ୍ତ ଜୀବିତ ଥାନ୍ତି ।

କେହି୨ ତିମିକୁ ମତ୍ସ୍ୟ ବୋଲି କହନ୍ତି, ମାତ୍ର ତିମି ମତ୍ସ୍ୟ ନୁହେ, ତିମି ସ୍ତନ୍ୟପାୟୀ ଜନ୍ତୁ । ତିମି ଅଣ୍ଡ ପ୍ରସବ ନ କରି ସନ୍ତାନ ପ୍ରସବ



କରେ । ତିମି ସନ୍ତାନ ଜନ୍ମ ହୋଇ ମାତାର ସ୍ତନ୍ୟପାନ କରେ । ପୃଥିବୀରେ ଯେତେ ଜୀବ ଅଛନ୍ତି ତନ୍ମଧ୍ୟରେ ତିମି ସର୍ବାପେକ୍ଷା ବୃହତ୍ତମ

ଅଟେ । ସାଧାରଣତଃ ତିମି ୫୦।୬୦ ହାତ ପର୍ଯ୍ୟନ୍ତ ଦୀର୍ଘ ହୁଅନ୍ତି । ସ୍ଥଳବିଶେଷରେ ୧୦୦ ହସ୍ତରୁ ଦୀର୍ଘ ତିମି ଦୃଷ୍ଟିଗୋଚର ହୋଇଅଛି । ତିମି ପୃଥିବୀର ବୃହତ୍ତମ ଜନ୍ତୁ ହେଲେହେଁ, ଏମାନେ ଅତିକ୍ଷୁଦ୍ର ସାମୁଦ୍ରିକ କୀଟ ଭୋଜନ କରି ପ୍ରାଣଧାରଣ କରନ୍ତି । ଏ ଦେଶରେ ଯେଉଁ ଚର୍ବିବର୍ତ୍ତି ପ୍ରଚୁର ପରିମାଣରେ ବ୍ୟବହୃତ ହୁଏ ତାହା ଏହି ତିମି ଚର୍ବିରେ ପ୍ରସ୍ତୁତ ।

ସମୁଦ୍ରରେ ଖଡ୍ଗମତ୍ସ୍ୟ, କରତମତ୍ସ୍ୟ ପ୍ରଭୃତି କେତେଗୁଡ଼ିଏ ଭୟଙ୍କର ଜନ୍ତୁ ଅଛନ୍ତି ।



ଖଡ୍ଗମତ୍ସ୍ୟ ୧୮ ହାତ ପର୍ଯ୍ୟନ୍ତ ଦୀର୍ଘ ହୁଅନ୍ତି । ଏମାନଙ୍କ ଖଡ୍ଗ ୫।୬ ହାତ ପର୍ଯ୍ୟନ୍ତ ଦୀର୍ଘ ହୁଏ । ଏମାନେ ତିମିର ପରମଶତ୍ରୁ ଅଟନ୍ତି । ଯୋଡ଼ାଏ ଖଡ୍ଗମତ୍ସ୍ୟ ଏକତ୍ରିତ ହୋଇ ଗୋଟାଏ ତିମିକୁ ଅନାୟାସେ ମାରି ପାରନ୍ତି । ଚିତ୍ରରେ ଦେଖ ଗୋଟାଏ ଖଡ୍ଗମତ୍ସ୍ୟ ଗୋଟାଏ ତିମିକୁ ଖଡ୍ଗରେ କେମନ୍ତ ବିନ୍ଧୁଅଛି ।

ସମୁଦ୍ରରେ କ୍ଷୁଦ୍ର ବୃହତ୍ ନାନାପ୍ରକାର ସର୍ପ ଅଛନ୍ତି । କୌଣସି ୨ ସାମୁଦ୍ରିକ ସର୍ପ ଏପରି ବିଷାକ୍ତ ଯେ ଦଂଶନର ଅବ୍ୟବହିତ ପରେ ଦଂଶିତ ପ୍ରାଣୀ ପ୍ରାଣତ୍ୟାଗ କରେ । ସ୍ଥଳଚର ସର୍ପଠାରୁ ସାମୁଦ୍ରିକ ସର୍ପର ଆକୃତି ବୃହତ୍ତର ଅଟେ । ଚିତ୍ରରେ ଦେଖ ଗୋଟାଏ ସାମୁଦ୍ରିକ ସର୍ପ ଗୋଟାଏ ତିମିକୁ କେମନ୍ତ ଗୁଡ଼ାଇ ଧରିଅଛି । ସର୍ପ ହଠାତ୍ ତିମି

ଦେହରେ ଗୁଡ଼ାଇ ହୋଇ, ସ୍ୱୀୟ ଶରୀରକୁ ଆକୁଞ୍ଚିତ କଲେ ତିମି



ସାମୁଦ୍ରିକ ସର୍ପ ଓ ତିମି ।

ପ୍ରଚଣ୍ଡ ପେଷଣରେ ପିଷ୍ଟ ହୋଇ ଅଳ୍ପକ୍ଷଣ ମଧ୍ୟରେ ପ୍ରାଣତ୍ୟାଗ କରେ । ତହିଁ ଉତ୍ତାରୁ ସର୍ପ ତିମିକୁ ଘେନି ସମୁଦ୍ରର ଅତଳଜଳରେ ନିମଜ୍ଜିତ ହୋଇ ଅଦୃଶ୍ୟ ହୁଏ । ଚିତ୍ରରେ ଦେଖ ତିମିର ଲାଞ୍ଜ ପାଖରେ ଆଉ ଗୋଟିଏ ସର୍ପ ଉପରକୁ ଅଳ୍ପ ମୁଣ୍ଡ ଟେକି ରହିଅଛି ।

ଅଫ୍ରିକାର ନଦୀମାନଙ୍କରେ ଏକଜାତୀୟ ପ୍ରାଣୀ ଅଛନ୍ତି, କେହି



ଏମାନଙ୍କୁ ଜଳହସ୍ତୀ, କେହି ଅବା ସାମୁଦ୍ରିକ ଗୋ ଆଖ୍ୟା ପ୍ରଦାନ କରଅଛନ୍ତି। ଏମାନେ ଗଣ୍ଡାର ତୁଲ୍ୟ ବୃହଦାକୃତି ହୁଅନ୍ତି। ଶିକାରୀମାନେ କେହି ଗୁଳ ମାରି, କେହି ବିଷାକ୍ତ କାଣ୍ଡ ମାରି, କେହି ଅବା ଟେଣ୍ଟା ମାରି, ଏମାନଙ୍କୁ ବଧ କରନ୍ତି। କ୍ରୁଦ୍ଧ ଜଳହସ୍ତୀ ସମ୍ମୁଖରେ ନୌକା ପଡିଲେ ହେଲେ, ଜଳହସ୍ତୀ ନୌକାକୁ ମୁହୂର୍ତ୍ତରେ ବପର୍ଯ୍ୟସ୍ତ କରିଦିଏ; ଡଙ୍ଗା ଅବା ମନୁଷ୍ୟ ସମ୍ମୁଖରେ ପଡିଲେ ହେଲେ ଜଳହସ୍ତୀ ତାହାକୁ ମୁଖରେ ଦ୍ୱିଖଣ୍ଡ କରିଦିଏ।



ଜଳହସ୍ତୀ ଅପଣାର ଛୁଆକୁ ପିଠିରେ ଘେନ ବୁଲେ। ଚିତ୍ରରେ ଦେଖ, ଗୋଟାଏ ଜଳହସ୍ତୀ ଅପଣାର ଛୁଆକୁ ପିଠିରେ ଘେନ କେମନ୍ତ ଜଳରେ ପହଁର ଯାଉଅଛି।

ଲୀଳାବତୀ—ଏ କଅଣମା। ପିଠିଟାରେ ଘେନ ଯାଉଅଛି, ଛୁଆଟା ପଡି ଯାଉ ନାହିଁ ?

ଅଈ—ଏଥିରେ ଅଶ୍ଚର୍ଯ୍ୟ ହେଲ କାହିଁକି ? ତୁମ୍ଭେ ତ ଦେଖି ନାହଁ ହନୁମାନଙ୍କଡ଼ା ଅପଣାର ଛୁଆକୁ ପେଟରେ ଘେନ ଏକ ଗଛରୁ ଅନ୍ୟ ଗଛକୁ କେମନ୍ତ ଡେଇଁ ଯାଏ ? ପାତିମାଙ୍କଡ଼ା ଅପଣାର ଛୁଆକୁ ପିଠିରେ

ଘେନ କେମନ୍ତ ଉଚ୍ଚ ଓ ନୀଚ ସ୍ଥାନକୁ ଯାନ୍ତି ? ନିମ୍ନରେ ଗୋଟିଏ ଦ୍ୱିଗର୍ଭ ପଶୁର ଚିତ୍ର ଦେଖ । ଏମାନଙ୍କୁ ଅପୋଜମ କହନ୍ତି । ମା ପିଠି ଦେଖାଇଲାକ୍ଷଣି ଛୁଅଗୁଡ଼ିକ ଚଢ଼ି ଅପଣା୨ ଲାଙ୍ଗୁଳକୁ ମା ଲାଙ୍ଗୁଳରେ



ଗୁଡ଼ାଇ ଦେଇ ପିଠି ଉପରେ ବସି ରହନ୍ତି । ଉକ୍ତ ଅପୋଜମ ଛୁଅମାନଙ୍କୁ ଘେନ ଦୃଢଗତିରେ ଅନ୍ୟ ସ୍ଥାନକୁ ଚାଲିଯାଏ । ଏମାନେ ଏକ ବୃକ୍ଷରୁ ଅନ୍ୟ ବୃକ୍ଷକୁ ଲମ୍ଫ ଦେଲେ ମଧ୍ୟ ଛୁଅମାନେ ପଡ଼ିଯାନ୍ତି ନାହିଁ । ତୁମ୍ଭେ ପଶୁମାନଙ୍କ କଥା ଶୁଣି ଅଶ୍ଚର୍ଯ୍ୟ ହେଉଅଛ, ମାତ୍ର ସ୍ଥଳବିଶେଷରେ ମନୁଷ୍ୟମାନଙ୍କ ମଧ୍ୟରେ ଛୁଅ ଘେନା-ବାର ବିଭିନ୍ନ ପ୍ରଥା ପ୍ରଚଳିତ ଅଛି । ଆସିଆ ମହାଦେଶର ଲୋକେ ପିଲାଙ୍କୁ କାଖରେ ଘେନନ୍ତି । ଇଉରୋପ ମହାଦେଶର ଲୋକେ ପିଲାଙ୍କୁ ବାହୁଉପରେ ଘେନନ୍ତି । ଆଫ୍ରିକା ମହାଦେଶର ଲୋକେ ପିଠିରେ, ଏବଂ ଆମେରିକାର ଆଦିମ ନିବାସିଙ୍କ ମଧ୍ୟରୁ କୌଣସି୨ ଜାତି ପିଲାଙ୍କୁ ସ୍କନ୍ଧରେ ଘେନ ବୁଲନ୍ତି ।

ତୁମ୍ଭେମାନେ ବୋଧ ହୁଏ ମଗର ଦେଖି ନାହଁ । ମଗର ବଡ଼ ଭୟଙ୍କର ଜନ୍ତୁ । ସମୁଦ୍ରରେ ନାନାଜାତୀୟ ମଗର ଅଛନ୍ତି । ଏମାନଙ୍କ ମଧ୍ୟରୁ ଶ୍ୱେତମଗରର ଆକୃତି ବୃହତ୍ତମ ହୁଏ । ଏମାନେ ମନୁଷ୍ୟ ଖାଇବା ସକାଶେ ସବୁବେଳେ ଜାହାଜର ପଛେ୨ ଗୋଡ଼ାଉଥାନ୍ତି । ଏଣୁ ଏମାନଙ୍କୁ କେହି୨ ଜଳବ୍ୟାଘ୍ର ଆଖ୍ୟା ଦେଇଅଛନ୍ତି । ଏମାନଙ୍କ



ମୁଣ୍ଡରେ ସୁତୀକ୍ଷ୍ଣ ଛଅ ପଂକ୍ତି ଦନ୍ତ ଅଛୁ । ଏମାନଙ୍କ ଇଚ୍ଛାନୁସାରେ ଏ-ହି ଦନ୍ତ ପଂକ୍ତି ଉତ୍ଥିତ କିମ୍ବା ପତିତ ହୁଏ । ମଗରମାନେ ମୁ-ହୂର୍ତ୍ତମଧ୍ୟରେ ମ-ନୁଷ୍ୟକୁ ଦ୍ୱିଖଣ୍ଡ କରି ପକାନ୍ତି ।

ଥରେ ଖଣ୍ଡିଏ ଜାହାଜ ଇଂଲଣ୍ଡରୁ ଭାରତବର୍ଷକୁ ଆସୁଥିଲା ବେଳେ ଗୋଟିଏ ପିଲା ସମୁଦ୍ରରେ ପଡ଼ି ଯିବାରୁ, ଜଣେ ସାହେବ, ସେହିପିଲାକୁ ଉଠାଇବା ସକାଶେ ଜାହାଜରୁ ସମୁଦ୍ରକୁ ଡେଇଁ ପଡ଼ିଲେ । ସାହେବ ପିଲାକୁ ଧରି ଜାହାଜ ଉପରକୁ ନ ଉଠୁଣୁ, ଗୋଟାଏ ଶ୍ୱେତମଗର ସାହେବଙ୍କୁ ଖାଇବା ସକାଶେ ଭାସି ଉଠିଲା । ତାହା ଦେଖି ଡେକନର ନାମରେ ସାହେବଙ୍କର ପୁତ୍ର ଖଣ୍ଡିଏ ତରବାରି ଘେନି ସମୁଦ୍ରକୁ ଡେଇଁ ପଡ଼ିଲା ଏବଂ ମଗର ପାଖକୁ ଅସିଲାକ୍ଷଣି ତରବାରିକୁ ମୁଠା ପର୍ଯ୍ୟନ୍ତ ମଗର ଦେହରେ ଭୂଷି ଦେଲା । ମଗର ସେହିକ୍ଷଣି ବୁଡ଼ିଗଲା ଏବଂ ସାହେବ ପିଲାକୁ ଘେନି ଦଉଡ଼ି ଧରି ଜାହାଜ ଉପରକୁ ଉଠି ଆସିଲେ । ଏହା ଉତ୍ତାରୁ ଡେକନର ଦଉଡ଼ି ଧରି ଜାହାଜ ଉପରକୁ ଉଠିଲା ବେ-ଳକୁ ମଗର ଭାସି ଉଠି ଏବଂ ଡେକନରର ଅଣ୍ଟା ପର୍ଯ୍ୟନ୍ତ ଗିଳି ଯାଇ, ଅଣ୍ଟା ପାଖରୁ କାଟି ନେଇ ବୁଡ଼ି ଗଲା। ପୁତ୍ର ହେତୁ ସାହେବଙ୍କର ପ୍ରାଣ-ରକ୍ଷା ହେଲା । ମାତ୍ର ଜାହାଜରେ ଏତେ ଲୋକ ଥାଉଁ ୬ ଡେକନରର

ପ୍ରାଣ ରକ୍ଷା ହେଲା ନାହିଁ । ବଡ଼ ମଗର ଜଣେ ମନୁଷ୍ୟକୁ ଅକ୍ଳେଶରେ ଗିଳି ଦିଏ ।

ସମୁଦ୍ରରେ ଆଉ ଏକ ଜାତିର ଭୟଙ୍କର ଜନ୍ତୁ ଅଛନ୍ତି ସେମାନଙ୍କୁ ଅଷ୍ଟପଦୀ କହନ୍ତି । ମାକଡ଼ସା ପରି ଏମାନଙ୍କର ଆଠଗୋଟି ପଦ



ଅଛି । ଚିତ୍ରରେ ଦେଖ, ଏମାନଙ୍କ ପଦରେ କେତେଗଡ଼ିଏ ରନ୍ଧ୍ର ଅଛି । ଏମାନେ ଏହି ରନ୍ଧ୍ରବାଟେ, ଅନ୍ୟାନ୍ୟ ଜୀବଦେହରୁ ରକ୍ତ ଶୋଷଣ କରନ୍ତି । ଥରେ ଏକ ସାହେବ ସମୁଦ୍ରରେ ସ୍ନାନ କରୁଥିଲାବେଳେ ଗୋଟାଏ ଅଷ୍ଟପଦୀ ତାହାଙ୍କ ଗୋଡ଼ରେ ଆପଣାର ଦୀର୍ଘ ପଦକୁ ବେଷ୍ଟନ କରି ଦେଲା । ପଦରେ କଅଣ ଲାଗିଅଛି ମନେ କରି ସାହେବ ଅପର ପଦଦ୍ୱାରା ପ୍ରଥମ ପଦକୁ ମୁକ୍ତ କରିବାର ଚେଷ୍ଟା କରିବାରୁ,

ଅଷ୍ଟପଦୀ ତାହାଙ୍କର ଦ୍ୱିତୀୟ ପଦକୁ ଆବଦ୍ଧ କରି ରଖିଲା। ତହିଁ ଉତ୍ତାରୁ ସାହେବ ଦୁଇ ହସ୍ତଦ୍ୱାରା ଦୁଇ ପଦକୁ ମୁକ୍ତ କରିବାର ଚେଷ୍ଟା କରିବାରୁ, ଅଷ୍ଟପଦୀ ତାଙ୍କର ଦୁଇ ହସ୍ତକୁ ଆବଦ୍ଧ କରି ରକ୍ତ ଶୋଷଣ କରିବାକୁ ଆରମ୍ଭ କଲା । ହସ୍ତ ପଦାଦିରେ ଅଗ୍ନି ସଂଯୋଗ କଲେ ଯେପରି ଯନ୍ତ୍ରଣା ହୁଏ, ସାହେବ ସେହିପରି ଅସହ୍ୟ ଯନ୍ତ୍ରଣା ଅନୁଭବ କରି, ଉଦ୍ଧାରର ଉପାୟ ନ ଦେଖି, ବ୍ୟାକୁଳରେ ଚିତ୍କାର କରି ଡାକିବାରୁ, କୂଳରେ ଥିବା ଲୋକମାନେ ଦଉଡ଼ି ଆସି, ଛୁରିରେ ଅଷ୍ଟପଦିର ପଦମାନ କାଟି ଦେଇ ସାହେବଙ୍କୁ ମୁକ୍ତ କଲେ । ଆଉ ଥରେ ଏକ ସାହେବ ନୌକାରେ ରହି ସମୁଦ୍ରରେ ଥିବା ଏକ ଜାହାଜରେ ରଙ୍ଗ ଲଗାଉଥିଲେ। ଗୋଟାଏ ଅଷ୍ଟପଦୀ ଗୋଟାଏ ଗୋଡ଼ ବଢ଼ାଇ ସାହେବଙ୍କର ଏକ ହସ୍ତକୁ ଗୁଡ଼ାଇ ଧରି ରକ୍ତ ଶୋଷଣ କରିବାକୁ ଏବଂ ସମୁଦ୍ର ମଧ୍ୟକୁ ଓଟାରି ନେଇ ଯିବାକୁ ଚେଷ୍ଟା କଲା । ସାହେବ ଛୁରି ନେଇ ତାହାର ସେହି ପଦକୁ କାଟି ପକାଇଲା କ୍ଷଣି, ଅଷ୍ଟପଦୀ ଆଉ ଗୋଟିଏ ପଦ ବଢ଼ାଇ ଦେଇ ସାହେବଙ୍କୁ ପୁଣି ନୌକାରୁ ଓଟାରି ନେବାକୁ ଚେଷ୍ଟା କଲା । ସାହେବ ତାହାର ସେହି ପଦକୁ ମଧ୍ୟ କାଟି ପକାଇଲେ । ଅଷ୍ଟପଦୀ ତୃତୀୟ ଥର ସେହିପରି ଚେଷ୍ଟା କରିବାରୁ ସାହେବ ତୃତୀୟ ଥର ମଧ୍ୟ ତାହାର ପଦକୁ କାଟି ପକାଇଲେ । ଅଷ୍ଟପଦୀ ଏହିପରି ତିନି ଗୋଟି ପଦଶୂନ୍ୟ ହୋଇ ନୌକା ପାଖରୁ ପଳାଇ ଗଲା ।

ଅନ୍ୟ ପୃଷ୍ଠାର ଚିତ୍ରରେ ଦେଖ ଗୋଟାଏ ଅଷ୍ଟପଦୀ ଜଣେ ମନୁଷ୍ୟକୁ କେମନ୍ତ ଆକ୍ରମଣ କରିଅଛି । ମନୁଷ୍ୟ ଖଣ୍ଡିଏ ଛୁରି ନେଇ, ଆପଣାକୁ ରକ୍ଷା କରିବା ସକାଶେ ଉଦ୍ୟତ ହୋଇଅଛି । ବୃହତ୍‌କାୟ ଅଷ୍ଟପଦୀର ଗୋଟିଏ୨ ପଦ ୧୦।୧୨ ହାତ ପର୍ଯ୍ୟନ୍ତ ଦୀର୍ଘ ହୁଏ ।



ଏମାନେ ପଦ୍ମମାନଙ୍କ ସଙ୍କଟ କର ଅତି ଅଳ୍ପ ସ୍ଥାନରେ ରହି ପାରନ୍ତି । ଏହି ଭୟଙ୍କର ଜନ୍ତୁ କର୍ତ୍ତୃକ ନାନାସ୍ଥାନରେ ଅନେକ ମନୁଷ୍ୟ ନଷ୍ଟ ହୋଇଅଛନ୍ତି ।

ନିମ୍ନରେ ଯାହାର ଚିତ୍ର ଦେଖୁଅଛ ତାହାକୁ ସୀଲ ଜନ୍ତୁ କହନ୍ତି । ଉତ୍ତର ମହାସମୁଦ୍ରରେ ପ୍ରଚୁର ପରିମାଣରେ ଏହି ଜନ୍ତୁ ଦୃଷ୍ଟିଗୋଚର ହୁଅନ୍ତି । ଏମାନେ ମତ୍ସ୍ୟ ଭୋଜନ କରି ପ୍ରାଣଧାରଣ କରନ୍ତି । ମନୁଷ୍ୟମାନେ ମାଂସ ଭକ୍ଷଣ ଏବଂ ତେଲ ସଂଗ୍ରହ କରିବା ନିମନ୍ତେ



ପ୍ରତିବର୍ଷ ବହୁ ସହସ୍ର ସୀଲ ବଧ କରନ୍ତି । ମନୁଷ୍ୟ ବ୍ୟତୀତ ଶ୍ୱେତଭଲ୍ଲୂକଦ୍ୱାରା ପ୍ରତିବର୍ଷ ବହୁସଂଖ୍ୟକ ସୀଲ ନିହତ ହୁଅନ୍ତି ।

ଏହାପୂର୍ବେ ସିନ୍ଧୁଘୋଟକର ଚିତ୍ର ଦେଖିଅଛ । ସିନ୍ଧୁଘୋଟକର ମୁଖରେ ଯୋଡ଼ିଏ ଦୀର୍ଘଦନ୍ତ ଥାଏ । ଏମାନେ ବେଳେ ବେଳେ ଏକତ୍ରିତ ହୋଇ ନୌକାରେ ଥିବା ମନୁଷ୍ୟମାନଙ୍କୁ ଆକ୍ରମଣ କରନ୍ତି । ଶ୍ୱେତଭଲ୍ଲୂକ ଅଳ୍ପବୟସ୍କ ସିନ୍ଧୁଘୋଟକକୁ ଅନାୟାସରେ ମାରି ଖାଏ

ମାଛ ପୂର୍ଣ୍ଣବୟସ୍କ ସିନ୍ଧୁଘୋଟକଙ୍କୁ ମାରିବାକୁ ଚେଷ୍ଟା କଲେ, ସିନ୍ଧୁ-
ଘୋଟକ ଉକ୍ତ ମତ୍ସ୍ୟ ସଙ୍ଗେ ଘୋରତର ଯୁଦ୍ଧ କରେ ।

ସମୁଦ୍ରରେ ଏକଜାତିର ମତ୍ସ୍ୟ ଅଛନ୍ତି ସେମାନଙ୍କୁ ଉଡ୍ଡୀୟମାନ ମତ୍ସ୍ୟ କହନ୍ତି । ଏମାନେ ସମୁଦ୍ରରୁ ସହସ୍ର ୨ ସଂଖ୍ୟାରେ ଉଠି, କେତେକଦୂର ଉଡ଼ିଯାଇ ପୁଣି ସମୁଦ୍ରରେ ପଡିତ ହୁଅନ୍ତି । ଏମାନେ ଶତ ହସ୍ତରୁ ଅଧିକ ଦୂର ଉଡି ଯାଇ ପାରନ୍ତି । କୌଣସି୨ ସମୟରେ ସମୁଦ୍ରରେ ଯାଉଥିବା ଜାହାଜ ଉପରେ ବହୁସଂଖ୍ୟକ ଉଡ୍ଡୀୟମାନ ମତ୍ସ୍ୟ ପତିତ ହୋଇ ମନୁଷ୍ୟମାନଙ୍କ ଭକ୍ଷ୍ୟ ହୁଅନ୍ତି । ପାର୍ଶ୍ୱରେ ଉଡ୍ଡୀୟମାନ ମତ୍ସ୍ୟର ଚିତ୍ର ପ୍ରଦତ୍ତ ହୋଇଅଛି ।



ଏକଜାତୀୟ ମତ୍ସ୍ୟ ଅଛନ୍ତି ତାହାକୁ ଇଂରାଜୀରେ ଈଲ୍ କହନ୍ତି । ଇଂଲଣ୍ଡର ଉପକୂଳରେ ବୃହଦାକୃତିର ଈଲ୍ ମାଛ ଦୃଷ୍ଟିଗୋଚର ହୁଏ । ବୃହତ୍ ଈଲ୍ ଦୈର୍ଘ୍ୟରେ ୬।୭ ହାତ ଏବଂ ଓଜନରେ ତିନ ମହଣ ପର୍ଯ୍ୟନ୍ତ ହୁଅନ୍ତି । ଏମାନେ ବେଳେ୨ ବାଲିରେ ପୋତିହୋଇ ଲୁଚି ରହନ୍ତି । ମନୁଷ୍ୟମାନେ କୁକୁର ସାହାଯ୍ୟରେ ଏମାନଙ୍କୁ ମାରନ୍ତି । କୁକୁର ଅଘ୍ରାଣଶକ୍ତିଦ୍ୱାରା ଯେଉଁ ସ୍ଥାନରେ ଈଲ୍ ଥାଏ ଜାଣି ପାରି, ଆପଣାର ପ୍ରଭୁଙ୍କୁ ଦେଖାଇ ଦିଏ । ଦକ୍ଷିଣ-ଅମେରିକାର ନଦୀମାନଙ୍କରେ ଯେଉଁ ଈଲ୍ମାଛ ଅଛନ୍ତି, ପୂର୍ବସ୍ଥାରେ ତାହାର ଚିତ୍ର ପ୍ରଦତ୍ତ ହୋଇଅଛି ।



ଏମାନଙ୍କ ଦେହରୁ ବୈଦ୍ୟୁତିକ ପ୍ରବାହ ନିର୍ଗତ ହୁଏ । ଏମାନେ କୌଣସି ପଶୁକୁ ସ୍ପର୍ଶ କଲାକ୍ଷଣି ଉକ୍ତ ପଶୁ ବୈଦ୍ୟୁତିକ ପ୍ରବାହର ସଂସ୍ପର୍ଶରେ ମୂର୍ଚ୍ଛିତ ହୁଏ ଏବଂ ସ୍ଥଳବିଶେଷରେ କୌଣସି ପଶୁ ପ୍ରାଣତ୍ୟାଗ କରେ । ଯେଉଁମାନେ ବଡ଼ିଶିରେ ମାଛ ଧରନ୍ତି, ସେମାନଙ୍କ ବଡ଼ିଶିର ସୂତାରେ ଏହି ମତ୍ସ୍ୟର ସଂଲଗ୍ନ ହେଲେ, ଓଦାସୂତାଦ୍ୱାରା ବୈଦ୍ୟୁତିକ ପ୍ରବାହ ଚାଳିତ ହୋଇ, ମାଛ ଧରୁଥିବା ଲୋକକୁ ସ୍ତମ୍ଭିତ କରେ ।

ପକ୍ଷିମାନଙ୍କୁ ବୃକ୍ଷ ଶାଖାରେ ବସା କରିବାକୁ ଦେଖିଅଛ । ମାତ୍ର



କୌଣସି୨ ଜାତିର ମାଛ ପକ୍ଷିମାନଙ୍କ ତୁଲ୍ୟ ବସା ନିର୍ମାଣ କରନ୍ତି ଶୁଣି ନାହିଁ । ଏହି ଜାତିର ଗୋଟିଏ ମାଛ ଜଳଜ ଗୁଳ୍ମଦ୍ୱାରା ଜଳ ମଧ୍ୟରେ ବସା ନିର୍ମାଣ କରେ, କେମନ୍ତ ସେହି ବସା ମଧ୍ୟରେ ରହିଅଛି ଚିତ୍ରରେ ଦେଖ ।

ଲୀଳାବତୀ—ଅଇ, ନିଶାମଣି ଓ ପଦ୍ମାବତୀ ଢୁଳେଇଲେଣି ଅଜି ଏତିକି ହୋଇଥାଉ ।



### ଅଷ୍ଟାଦଶ ସନ୍ଧ୍ୟା ।

## ରୋଗୀର ପଥ୍ୟ ।

ଅତ୍ର—ରୋଗୀର ପଥ୍ୟ କପରି ରଖିବ ତାହା ସମସ୍ତଙ୍କର ଜାଣିବା ଉଚିତ । ଔଷଧଦ୍ୱାରା ରୋଗୀର ଯେପରି ଉପକାର ହୁଏ, ସୁପଥ୍ୟ ହେତୁ ମଧ୍ୟ ସେହିପରି ଉପକାର ହୁଏ । ସାଧ୍ୟାନୁସାରେ ରୋଗୀର ପଥ୍ୟରେ ଘିଅ ଓ ମଶଲାର ପରିମାଣ ଊଣା କରିବ । ଚିକିତ୍ସକ ଭିନ୍ନ ଭିନ୍ନ ରୋଗରେ ଭିନ୍ନ ଭିନ୍ନ ପଥ୍ୟର ବ୍ୟବସ୍ଥା କରନ୍ତି । ଏଣୁ ଚିକିତ୍ସକଙ୍କ ବ୍ୟବସ୍ଥାନୁସାରେ ପଥ୍ୟ ରନ୍ଧନ କରିବ । ଖାଦ୍ୟମାତ୍ରକୁ ବାଛି, ପରିଷ୍କାର କରି ପାକ କରିବା ଉଚିତ । ବିଶେଷତଃ ରୋଗୀର ପଥ୍ୟ ସମ୍ବନ୍ଧରେ ଏହି ବିଷୟରେ ଅଧିକ ସତର୍କ ହୋଇ କାର୍ଯ୍ୟ କରିବ ।

### ସାଗୁଦାନା ।

କୌଣସି ଧାତୁପାତ୍ରରେ ନ ରାନ୍ଧି ପରିଷ୍କାର ମାଟି ହାଣ୍ଡିରେ ସାଗୁଦାନା ପାକ କରିବା ଉଚିତ । ଦେଢ଼ ତୋଳା ସାଗୁଦାନାକୁ ପାଏ ଥଣ୍ଡା ଜଳରେ ଦୁଇଘଣ୍ଟା ପର୍ଯ୍ୟନ୍ତ ଭିଜାଇ ରଖିବ । ତାହା ଉତ୍ତାରୁ ସେହି ଜଳ ଓ ସାଗୁଦାନାକୁ ହାଣ୍ଡିରେ ଦେଇ ଆଉ ଅଳ୍ପ ପରିମାଣରେ ଜଳ ମିଶାଇ, ଜାଳ ଦେବ । ଉତ୍ତମରୂପେ ସିଦ୍ଧ ହେଲେ ଚୂଲ୍ହୀରୁ ଓହ୍ଲାଇ ପରିଷ୍କୃତ ପାତଳ ଲୁଗାରେ ଛାଣି ନେବ । ସେହି ଛଣା ଜଳ ସଙ୍ଗେ କାଗଜି ଲେମ୍ବୁରସ, ଲୁଣ, କମ୍ବା ମରିଚଗୁଣ୍ଡ ମିଶାଇ ରୋଗୀକୁ ଖାଇବାକୁ ଦେବ । ଚିକିତ୍ସକ କହିଲେ, ଲୁଣ ନ ମିଶାଇ, ଅଳ୍ପ ଅଉଟା ଦୁଧ ଓ ମିଛିରିଗୁଣ୍ଡ ମିଶାଇ ଖାଇବାକୁ ଦେବ ।

### ଆରାରୁଟ ।

ଅଳ୍ପ ଥଣ୍ଡା ପାଣିରେ ଦେଢ଼ତୋଳା ଆରାରୁଟ ଗୋଳି ଦେଇ, ତାହା

ସଙ୍ଗେ ଫୁଟୁଥିବା ଭଳ ଗରମ ଜଳ ଅଳ୍ପ ପରିମାଣରେ ମିଶାଇବ । ତାହା ଉତ୍ତାରୁ ଦଣ୍ଡେ ଚୂଲିରେ ବସାଇ ଫୁଟାଇ ନେଇ, ଓହ୍ଲାଇ ରଖିବ । ଲୁଣ ଓ କାଗଜିଲେମ୍ବୁରସ ଦେଇ, ଜମ୍ବା ଦୁଧ ଓ ମିଶ୍ରୀଚୂର୍ଣ୍ଣ ଦେଇ ରୋଗୀକୁ ଖାଇବାକୁ ଦେବ ।

## ସୁଜି ।

ଦେଡ଼ତୋଳା ସୁଜି ପାଏ ଜଳରେ ମିଶାଇ ଉତ୍ତମରୂପେ ସିଦ୍ଧ କରିବ । ସିଦ୍ଧ ହେଲେ ପରିଷ୍କୃତ ଲୁଗାରେ ଛାଣି ନେବ । ତହିଁ ଉତ୍ତାରୁ କାଗଜି ଲେମ୍ବୁରସ ଓ ଲୁଣ ଜମ୍ବା ମିଶ୍ରିଗୁଣ୍ଡ ଦେଇ ରୋଗିକୁ ଦେବ । ଡାକ୍ତର କହିଲେ, ଅଳ୍ପ ଅଉଟା ଦୁଧ ମିଶାଇ ଦେବ ।

## ବାର୍ଲି ।

ବର୍ତ୍ତମାନ ନାନାସ୍ଥାନରେ ରୋଗିଙ୍କୁ ବାର୍ଲି ଖାଇବାକୁ ଦିଅନ୍ତି । ଇଂରାଜିରେ ଯବକୁ ବାର୍ଲି କହନ୍ତି । ଏ ଦେଶରେ ମଧ୍ୟ କବିରାଜ-ମାନେ ରୋଗିଙ୍କୁ ଯବମଣ୍ଡ ଖାଇବାକୁ ଦିଅନ୍ତି । ପରିଷ୍କୃତ ଦାନାଦାର ଦେଡ଼ତୋଳା ଯବକୁ ଉତ୍ତମରୂପେ ଧୋଇ ନେବ । ତାହା ଉତ୍ତାରୁ ଅଧ-ସେରେ ଅଣ୍ଡାପାଣିରେ ପକାଇ ଚୂଲିରେ ବସାଇବ । ଉତ୍ତମରୂପେ ସିଦ୍ଧ ହେଲେ ଚୂଲିରୁ ଓହ୍ଲାଇ ଆଣି ଲୁଗାରେ ଛାଣି ନେବ ଏବଂ ଲୁଣ ଓ କାଗଜିଲେମ୍ବୁରସ ଦେଇ ରୋଗିକୁ ଦେବ । ଏହାକୁ ଯବମଣ୍ଡ କହନ୍ତି ।

ଦେଡ଼ତୋଳା ବାର୍ଲି ପାଏ ଜଳରେ ଗୋଳି ଉତ୍ତମରୂପେ ସିଦ୍ଧ କରିବ । ସୁସିଦ୍ଧ ହେଲେ ଓହ୍ଲାଇ କାଗଜିଲେମ୍ବୁରସ ଓ ଲୁଣ ଜମ୍ବା ଦୁଧ ଓ ମିଶ୍ରିଗୁଣ୍ଡ ମିଶାଇ ରୋଗିକୁ ଦେବ ।

## ଖଇମଣ୍ଡ ।

ଭଲ ତାଟକା ଖଇ ଅଳ୍ପ ଗରମଜଳରେ ଭିଜାଇ ଦେବ । ତାହା

ଉତ୍ତାରୁ ତାହାକୁ ଚକଟି ପାତଳ ଲୁଗାରେ ଛାଣି ନେଇ କାଗଜି ଲେମ୍ବୁ-ରସ ଓ ଲୁଣ କମ୍ପା ମିଶି ଦେଇ ରୋଗୀକୁ ପଥ୍ୟ କରାଇବ ।

## ମାଂସର କ୍ୱାଥ ।

ଅଧସେରେ ଚର୍ବି ନ ଥିବା ଛାଗମାଂସ ଉତ୍ତମରୂପେ କୁଟି ନେଇ, ଏହି କୁଟା ମାଂସକୁ ସେରେ ଥଣ୍ଡା ଜଳରେ ତିନିଘଣ୍ଟା ପର୍ଯ୍ୟନ୍ତ ଭିଜାଇ ରଖିବ । ତାହା ଉତ୍ତାରୁ ସେହି ଜଳ ଓ ମାଂସକୁ ମୃଦୁଜାଳରେ ସିଦ୍ଧ କରିବ । ପାଏ ଜଳ ଅବଶେଷ ଥାଉଁ ଓହ୍ଲାଇ, ପାତଳ ଲୁଗାରେ ଛାଣି ନେଇ, ସେହି ଝୋଳରେ ଅଳ୍ପ ପରମାଣ ଲୁଣ ଓ ଗୋଲମରିଚଗୁଣ୍ଡ ମିଶାଇ ରୋଗୀକୁ ପଥ୍ୟ ଦେବ । ଏହାକୁ ସୁସ୍ୱାଦୁ କରିବାକୁ ହେଲେ ତିନିଟୋପା ଘିଅରେ ଖଣ୍ଡିଏ ତେଜପତ୍ର ଦେଇ ବଘାର ନେବ । ରୋଗୀର ଅରୁଚି ହୋଇଥିଲେ, ମାଂସ ସିଦ୍ଧ ହେଲା ବେଳେ ଦୁଇ ତିନିଖଣ୍ଡ ଡାଳ-ଚିନି ଦେଇ ପାକ କରିବ । ଏପରି ପଥ୍ୟ ରୋଗିପକ୍ଷରେ ଅତ୍ୟନ୍ତ ଲଘୁ-ପାକ ଏବଂ ବଳକାରକ ହୁଏ ।

ଆଜି ଏହି ପର୍ଯ୍ୟନ୍ତ ହେଉ, ମୁଁ ଯାଉଅଛି କାର୍ଯ୍ୟ ଅଛି ।



ଜନବଂଶ ସଙ୍ଖ୍ୟା ।

## ତୃତୀୟ ପ୍ରସଙ୍ଗ ।

ନଗାମ୍ବଣି—ଆଈ, ଭାରତବର୍ଷରେ ମୁସଲମାନମାନଙ୍କ ସଂଖ୍ୟା ଅଧିକ କି ହିନ୍ଦୁମାନଙ୍କ ସଖ୍ୟା ଅଧିକ ?

ଆଈ—ଭାରତବର୍ଷର ଲୋକସଂଖ୍ୟା ପ୍ରାୟ ୩୦ କୋଟି । ତନ୍ମଧ୍ୟରୁ ହିନ୍ଦୁଙ୍କ ସଂଖ୍ୟା ପ୍ରାୟ ୨୨ କୋଟି, ମୁସଲମାନମାନଙ୍କ ସଖ୍ୟା ପ୍ରାୟ ୭ କୋଟି, ଏବ ଅନ୍ୟାନ୍ୟ ଧର୍ମାବଲମ୍ବିଙ୍କ ସଖ୍ୟା ଏକ କୋଟିରୁ ଅଧିକ ଅଟେ; ଅର୍ଥାତ୍ ଭାରତବର୍ଷର ଲୋକସଖ୍ୟାକୁ ୧୬ ପଣ ଧଇଲେ ହିନ୍ଦୁ ୧୧ ପଣ, ମୁସଲମାନ ୩ ପଣ ଏବଂ ଅନ୍ୟାନ୍ୟ ଧର୍ମାବଲମ୍ବୀ ୨ ପଣ ହେବେ ।

ଲୀଳାବତୀ—ଆଈ, ପୃଥିବୀରେ କେଉଁ ଧର୍ମର ଲୋକ ଅଧିକ ?

ଆଈ—ପୃଥିବୀରେ ବୌଦ୍ଧମାନଙ୍କ ସଂଖ୍ୟା ସବାପେକ୍ଷା ଅଧିକ । ଏମାନଙ୍କ ସଖ୍ୟା ୪୩ କୋଟିରୁ ଅଧିକ । ଚୀନସାମ୍ରାଜ୍ୟ, ଜାପାନସାମ୍ରାଜ୍ୟ, ପୂର୍ବଉପଦ୍ୱୀପ, ବ୍ରହ୍ମଦେଶ, ଲଙ୍କା ପ୍ରଭୃତିର ଅଧିବାସୀ ବୌଦ୍ଧଧର୍ମାବଲମ୍ବୀ ଅଟନ୍ତି । ଏମାନଙ୍କ ଉତ୍ତାରୁ ଖ୍ରୀଷ୍ଟାନମାନଙ୍କ ସଖ୍ୟା ସବାପେକ୍ଷା ଅଧିକ । ପୃଥିବୀରେ ଖ୍ରୀଷ୍ଟାନସଖ୍ୟା ପ୍ରାୟ ୩୭୫ କୋଟି । ତୁରସ୍କ ବ୍ୟତୀତ ସମଗ୍ର ଇଉରୋପ ମହାଦେଶରେ, ଆମେରିକାରେ, ଅଷ୍ଟ୍ରେଲିଆ ମହାଦେଶରେ, ଏବ ଆଫ୍ରିକାର କେତେକ ସ୍ଥାନରେ ଖ୍ରୀଷ୍ଟଧର୍ମ ପ୍ରଚଳିତ । ଏମାନଙ୍କ ଉତ୍ତାରୁ ହିନ୍ଦୁ ଓ ମୁସଲମାନମାନଙ୍କ ସଖ୍ୟା ଅଧିକ । ହିନ୍ଦୁଙ୍କ ସଂଖ୍ୟା ପ୍ରାୟ ୨୨ କୋଟି । ଭାରତବର୍ଷ ବ୍ୟତୀତ ଅନ୍ୟ କୌଣସି ଦେଶରେ ହିନ୍ଦୁଧର୍ମ ପ୍ରଚଳିତ ନାହିଁ । ଭାରତବର୍ଷର କେତେକ ଅଧିବାସୀ, ଅଫଗାନସ୍ଥାନ, ପାରସ୍ୟ, ତୁରସ୍କ, ଆରବ, ତାତାର, ଆଫ୍ରି-

କାର ଉତ୍ତରାଂଶର ଅଧିବାସୀ ମୁସଲମାନ ଅଟନ୍ତି । ପୃଥିବୀରେ ମୁସଲ-ମାନମାନଙ୍କ ସଂଖ୍ୟା ପ୍ରାୟ ୬୦ କୋଟି ।

ପଦ୍ମାବତୀ—ଅଈ, ଏମାନଙ୍କ ମଧ୍ୟରୁ କେଉଁ ଧର୍ମ୍ମ ସବୁଠାରୁ ପ୍ରାଚୀନ ?

ଅଈ—ଏମାନଙ୍କ ମଧ୍ୟରୁ ହିନ୍ଦୁଧର୍ମ୍ମ ସର୍ବାପେକ୍ଷା ପ୍ରାଚୀନତମ ଅଟେ । ବହୁସହସ୍ର ବର୍ଷ ହେଲା ହିନ୍ଦୁଧର୍ମ୍ମ ପ୍ରଚଳିତ ହୋଇଅଛି । ବୌଦ୍ଧଧର୍ମ୍ମ ଅନ୍ୟାନ୍ୟ ଧର୍ମ୍ମଠାରୁ ପ୍ରାଚୀନତମ । ଦୁଇସହସ୍ର ପଞ୍ଚଶତ ବର୍ଷ ହେଲା ଶାକ୍ୟସିଂହ ନାମରେ ଭାରତବର୍ଷର ଏକ କ୍ଷତ୍ରିୟ ରାଜପୁତ୍ର ସନ୍ନ୍ୟାସାବଲମ୍ବନ କରି ଏହି ଧର୍ମ୍ମ ପ୍ରଚାର କରିଥିଲେ । ଶାକ୍ୟସିଂହଙ୍କ ବୁଦ୍ଧ ( ଅର୍ଥାତ୍ ଜ୍ଞାନୀ ) ବୋଲି ଅନ୍ୟ ନାମ ଥିଲା । ଏଣୁ ତାହାଙ୍କ ପ୍ରଚାରିତ ଧର୍ମ୍ମର ନାମ ବୌଦ୍ଧ ହୋଇଅଛି । ଭାରତବର୍ଷରେ ଏହି ଧର୍ମ୍ମ ପ୍ରଥମ ପ୍ରଚାରିତ ହୋଇଥିଲେହେଁ, ଭାରତବର୍ଷରୁ ଏହି ଧର୍ମ୍ମ ବିଲୁପ୍ତ ହୋଇ ଅନ୍ୟାନ୍ୟ ଦେଶରେ ପ୍ରଚଳିତ ରହିଅଛି । ବୌଦ୍ଧଧର୍ମ୍ମ ଉତ୍ତାରୁ, ୧୯ ଶତ ବର୍ଷ ହେଲା ଖ୍ରୀଷ୍ଟଧର୍ମ୍ମ ପ୍ରଚଳିତ ହୋଇଅଛି । ଖ୍ରୀଷ୍ଟଧର୍ମ୍ମ ପ୍ରଚାରକର୍ତ୍ତା ଯିଶୁଖ୍ରୀଷ୍ଟ ତୁରସ୍କର ଅନ୍ତର୍ଗତ ସିରିଆ ପ୍ରଦେଶ-ରେ ଜନ୍ମଗ୍ରହଣ କରିଥିଲେ । ତେରଶତବର୍ଷ ହେଲା ମୁସଲମାନଧର୍ମ୍ମ-ପ୍ରଚାରକର୍ତ୍ତା ମହମ୍ମଦ ଆରବଦେଶର ମକ୍କାନଗରରେ ଜନ୍ମଗ୍ରହଣ କରି-ଥିଲେ ।

ଲୀଳାବତୀ—ଅଚ୍ଛା ଅଈ, ଏହି ପ୍ରଧାନ ଚାରି ଧର୍ମ୍ମ ମଧ୍ୟରେ ହିନ୍ଦୁ-ଧର୍ମ୍ମ ସବୁଠାରୁ ପ୍ରାଚୀନତମ ହେଲେହେଁ, ଅଳ୍ପଦିନର ମୁସଲମାନ-ଧର୍ମ୍ମର ଲୋକମାନଙ୍କ ସଙ୍ଗେ ହିନ୍ଦୁମାନଙ୍କ ସଂଖ୍ୟା ପ୍ରାୟ ସମାନ କିପରି ହେଲା ?

ଅଈ—ହିନ୍ଦୁମାନେ କାହାରିକି ବଳପୂର୍ବକ ଆପଣା ଧର୍ମ୍ମରେ

ଦୀକ୍ଷିତ କରାଉ ନ ଥିଲେ । ହିନ୍ଦୁମାନେ ଭାରତବର୍ଷ ଛାଡ଼ି ଅନ୍ୟ ଦେଶକୁ ଧର୍ମ ପ୍ରଚାର କରିବାକୁ ଯାଉ ନ ଥିଲେ । ହିନ୍ଦୁମାନଙ୍କ ମଧ୍ୟରୁ କେହି ଭାରତବର୍ଷ ଛାଡ଼ି ଅନ୍ୟ ଦେଶକୁ ଗଲେ ଜାତିଭ୍ରଷ୍ଟ ହେଉଥିଲେ । ମାତ୍ର ମୁସଲମାନମାନେ ଧର୍ମଯୁଦ୍ଧ ଘୋଷଣା କରି, ଯେଉଁ ଦେଶ ଜୟ କରୁଥିଲେ ତାହାର ଅଧିବାସିମାନଙ୍କୁ ବଳପୂର୍ବକ ମୁସଲମାନ କରାଉଥିଲେ । ଯେଉଁମାନେ ମୁସଲମାନଧର୍ମ ଗ୍ରହଣ କରିବାକୁ ଅସମ୍ମତ ହେଉଥିଲେ ମୁସଲମାନମାନେ ସେମାନଙ୍କୁ ନିହତ କରୁଥିଲେ । ମହମ୍ମଦଙ୍କ ମୃତ୍ୟୁର ଅଳ୍ପଦିନ ଉତ୍ତାରୁ ମୁସଲମାନମାନେ ଅତ୍ୟନ୍ତ ପ୍ରବଳ ହୋଇ ନାନାଦେଶରେ ମୁସଲମାନଧର୍ମ ସ୍ଥାପନ କରିଥିଲେ ।

ନଶାମଣି—ଖ୍ରୀଷ୍ଟିୟାନମାନେ କି ଏହିପରି ବଳପୂର୍ବକ ଧର୍ମ ପ୍ରଚାର କରୁଅଛନ୍ତି ?

ଆଈ—ନା, ଖ୍ରୀଷ୍ଟିୟାନମାନେ ବଳପୂର୍ବକ ଧର୍ମ ପ୍ରଚାର କରନ୍ତି ନାହିଁ । ବର୍ତ୍ତମାନ ଅନ୍ୟାନ୍ୟ ଧର୍ମାବଲମ୍ବିମାନଙ୍କଠାରୁ ଖ୍ରୀଷ୍ଟିୟାନମାନେ ପରାକ୍ରମ ଓ ଅର୍ଥବଳରେ ଶ୍ରେଷ୍ଠ ଅଟନ୍ତି । ଏମାନେ ନାନାଦେଶ ଜୟ କରି, ପ୍ରଚାରକମାନଙ୍କ ପ୍ରେରଣପୂର୍ବକ ଧର୍ମପ୍ରଚାରଦ୍ୱାରା ଲକ୍ଷ ଲକ୍ଷ ଲୋକଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରୁଅଛନ୍ତି । ଖ୍ରୀଷ୍ଟଧର୍ମ ପ୍ରଚାର ନିମନ୍ତେ ଇଉରୋପ ଏବଂ ଆମେରିକାର ଲୋକମାନେ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କା ବ୍ୟୟ କରୁଅଛନ୍ତି ।

ଲୀଳା—ଅଉ କଣମ, ଦେଖି ନାହୁଁ, ପାଦରିସାହେବମାନେତ ଧର୍ମ ପ୍ରଚାର କରୁଅଛନ୍ତି, ସେମାନଙ୍କ ମେମମାନେ ଘରେ ଘରେ ପଶି ଧର୍ମ ପ୍ରଚାର କରୁଅଛନ୍ତି । ଭାରତବର୍ଷର କେଉଁ ସ୍ତ୍ରୀ କେବେ ଧର୍ମ ପ୍ରଚାର କରିଥିଲା ?

ଆଈ—ବର୍ତ୍ତମାନ ହୀନଦଶା ହୋଇଅଛି ସତ୍ୟ, ମାତ୍ର ପୂର୍ବକାଳରେ

ଭାରତବର୍ଷରେ ଏପରି ଅବସ୍ଥା ନ ଥିଲା । ଖ୍ରୀଷ୍ଟଧର୍ମର ସୃଷ୍ଟିର କେତେକ ଶତବର୍ଷ ପୂର୍ବରେ, ଅର୍ଥାତ୍ ଯୀଶୁଖ୍ରୀଷ୍ଟଙ୍କ ଜନ୍ମଗ୍ରହଣର ପ୍ରାୟ ଛଅ ଶତ ବର୍ଷ ପୂର୍ବରେ, ପ୍ରଚାରକମାନଙ୍କ ଦ୍ୱାରା ଧର୍ମପ୍ରଚାର ପ୍ରଥା ଭାରତବର୍ଷରେ ପ୍ରଚଳିତ ହୋଇଥିଲା । ଯେଉଁ ସମୟରେ ବୁଦ୍ଧଦେବ ଶିଷ୍ୟମାନଙ୍କୁ ନେଇ ଆର୍ଯ୍ୟାବର୍ତ୍ତର ନାନା ପ୍ରଦେଶରେ ଧର୍ମପ୍ରଚାର କାର୍ଯ୍ୟରେ ପ୍ରବୃତ୍ତ ହୋଇଥିଲେ, ସେହି ସମୟରେ ତାହାଙ୍କ ଧର୍ମଶୀଳା ପତ୍ନୀ ଗୋପା ସ୍ୱୀୟ ପତିଙ୍କ ନବଧର୍ମରେ ଦୀକ୍ଷିତା ହୋଇ, କେତେକ ଜଣ ରମଣୀ ସମଭିବ୍ୟାହାରରେ ବୌଦ୍ଧଧର୍ମ ପ୍ରଚାର କରି ଆର୍ଯ୍ୟାବର୍ତ୍ତର ନାନାପ୍ରଦେଶର ବହୁ ସହସ୍ର ରମଣୀଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତା କରାଇଥିଲେ । ଖ୍ରୀଷ୍ଟଜନ୍ମର ତିନିଶତ ବର୍ଷ ପୂର୍ବେ ରାଜାଧିରାଜ ଅଶୋକ ବୋଧହୁଏ ମୁଦ୍ରା ବ୍ୟୟ କରି ବହୁସହସ୍ର ପ୍ରଚାରକଙ୍କୁ ନାନା ସ୍ଥାନକୁ ପ୍ରେରଣ ପୂର୍ବକ ବୌଦ୍ଧଧର୍ମ ପ୍ରଚାର କରାଇଥିଲେ । ତାହାଙ୍କ ପ୍ରେରିତ ପ୍ରଚାରକମାନେ ତିବତ, ତାତାର, ମଙ୍ଗୋଲିଆ, ଚୀନ, ବ୍ରହ୍ମଦେଶ, ଅନାମ, ସିଂହଳ, ଏବଂ ଆସିଆର ପଶ୍ଚିମସୀମା ତୁରସ୍କ ଦେଇ ମିଶର ପର୍ଯ୍ୟନ୍ତ ଗମନ କରି ଧର୍ମପ୍ରଚାର କରିଥିଲେ । ଅଶୋକଙ୍କ ପୁତ୍ର ମହେନ୍ଦ୍ର ଏବଂ କନ୍ୟା ସଙ୍ଘମିତ୍ରା ସନ୍ନ୍ୟାସାବଲମ୍ବନ କରି ସିଂହଳରେ ଧର୍ମପ୍ରଚାର କରିଥିଲେ ।

ପଦ୍ମାବତୀ—ଅପା, ବୌଦ୍ଧଧର୍ମର ସନ୍ନ୍ୟାସିନୀ ପରି କୌଣସି ହିନ୍ଦୁ ରାଜକନ୍ୟା ସନ୍ନ୍ୟାସିନୀ ହୋଇଥିଲେ ?

ଅପା—ଭାରତବର୍ଷର ଇତିହାସରେ ସେପରି ଦୃଷ୍ଟାନ୍ତର ଅଭାବ ନାହିଁ । ମୀରାବାଈ, ରାଜକନ୍ୟା ହୋଇ, ମହାରାଜଙ୍କ ପତ୍ନୀ ହୋଇ, କଠୋର ସନ୍ନ୍ୟାସବ୍ରତ ଅବଲମ୍ବନ କରିଥିଲେ । ଧର୍ମାଲୋଚନା ବ୍ୟତୀତ ରାଜ୍ୟଶାସନ ଏବଂ ସମରକାର୍ଯ୍ୟରେ ମଧ୍ୟ ଭାରତରମଣୀ ଅସାଧାରଣ ପାରଦର୍ଶିତା ଦେଖାଇ ଯାଇଅଛନ୍ତି । ମହାରାଣୀ ଅହଲ୍ୟା-

ବାଈ ଯେପରି ନିପୁଣତା ସହ ରାଜ୍ୟଶାସନ କରିଥିଲେ, ସେପରି ଦୃଷ୍ଟାନ୍ତ ଅନ୍ୟଦେଶର ଇତିହାସରେ ବିରଳ ଲକ୍ଷିତ ହୁଏ । ଗଡ଼-ରାଜ୍ୟର ରାଣୀ ଦୁର୍ଗାବତୀ ଯେପରି ଅସାଧାରଣ ବୀରତ୍ୱ ପ୍ରଦର୍ଶନ-ପୂର୍ବକ ପ୍ରବଳପ୍ରତାପୀ ସମ୍ରାଟ୍ ଅକବରଙ୍କ ସୈନ୍ୟମାନଙ୍କୁ କେତେକଥର ଯୁଦ୍ଧରେ ପରାଜିତ କରି, ପଶ୍ଚାତ୍ ମୁସଲମାନସେନାପତିଙ୍କ କୌଶଳରେ ପରାଜିତ ହୋଇ ଆତ୍ମହତ୍ୟା କରିଥିଲେ, ସେପରି ଦୃଷ୍ଟାନ୍ତ ମଧ୍ୟ ଭିନ୍ନଦେଶୀୟ ଇତିହାସରେ ଅଧିକ ସଂଖ୍ୟାରେ ଲକ୍ଷିତ ହେବ ନାହିଁ ।

ଜଣେ କ୍ଷତ୍ରିୟରମଣୀର ଅଦ୍ଭୁତ ବିବରଣ କହୁଅଛୁ ମନ ଦେଇ ଶୁଣ । ଏହି ଅଲୋକସାମାନ୍ୟା ରମଣୀଙ୍କ ନାମ ପଦ୍ମିନୀ । ଅତୁଳନୀୟ ରୂପବତୀ ପଦ୍ମିନୀ ଚିତୋରରାଜ ଭୀମସିଂହଙ୍କ ମହିଷୀ ଥିଲେ । ଦିଲ୍ଲୀର ମୁସଲମାନସମ୍ରାଟ୍ ଅଲ୍ଲାଉଦ୍ଦୀନ, ପଦ୍ମିନୀଙ୍କ ଅଲୌକିକ ରୂପରାଶିର କଥା ଶ୍ରବଣ କରି, ଦୂତହସ୍ତରେ ଭୀମସିଂହଙ୍କୁ କହି ପଠାଇଲେ ଯେ, ଅଲ୍ଲାଉଦ୍ଦୀନଙ୍କୁ ପଦ୍ମିନୀ ପ୍ରଦାନ କଲେ ବିସ୍ତୀର୍ଣ୍ଣ ରାଜ୍ୟ ଏବଂ ବହୁ ଧନ ରତ୍ନ ପ୍ରାପ୍ତ ହେବେ; ତାହାର ଅନ୍ୟଥା କଲେ ଅଳ୍ପଦିନ ମଧ୍ୟରେ ସ୍ୱୀୟ ରାଜ୍ୟ ସମ୍ପଦରୁ ବଞ୍ଚିତ ହେବେ । ଭୀମସିଂହ ଏହି ଘୃଣିତ ପ୍ରସ୍ତାବରେ ସମ୍ମତି ଦାନ ନ କରିବାରୁ ଅଲ୍ଲାଉଦ୍ଦୀନ ବହୁସୈନ୍ୟ ସହ ଆଗମନ କରି ଚିତୋର ଆକ୍ରମଣ କଲେ । ମାତ୍ର ରାଜପୁତମାନେ ବିପୁଳ ଉତ୍ସାହରେ ଦୁର୍ଗ ରକ୍ଷା କରିବାରୁ ଦୁର୍ଗ ଗ୍ରହଣରେ ଅକ୍ଷମ ହେଲେ । କେତେକ ମାସ ଦୁର୍ଗାବରୋଧ କରି ରହି ଶେଷକୁ ବିଫଳମନୋରଥ ହୋଇ ସୈନ୍ୟସହ ଦିଲ୍ଲୀ ପ୍ରତ୍ୟାଗମନ କରିବାକୁ ସଙ୍କଳ୍ପ କଲେ । କିନ୍ତୁ ପ୍ରତ୍ୟାଗମନପୂର୍ବେ, ଭୀମସିଂହଙ୍କ ସଙ୍ଗେ ସାକ୍ଷାତ୍ କରି ମିତ୍ରତା-ସୂତ୍ରରେ ଆବଦ୍ଧ ହେବାପାଇଁ ଦୂତ ପ୍ରେରଣ କଲେ । ଅକାରଣ ଲୋକ-

ଷୟକର ଯୁଦ୍ଧରେ ପ୍ରବୃତ୍ତ ହେବାଠାରୁ ମିତ୍ରତାସୂତ୍ରରେ ଆବଦ୍ଧ ହେବା ବାଞ୍ଛନୀୟ ମନେ କରି, ଭୀମସିଂହ ଅଲ୍ଲାଉଦ୍ଦୀନଙ୍କ ପ୍ରସ୍ତାବରେ ସମ୍ମତ ହେଲେ । ଅଲ୍ଲାଉଦ୍ଦୀନ କତିପୟ ଅନୁଚରସହ ଦୁର୍ଗ ଦୁଆରରେ ଉପସ୍ଥିତ ହେବାକ୍ଷଣି ଭୀମସିଂହ ସମୁଚିତ ଅଭ୍ୟର୍ଥନା କରି ସମ୍ରାଟଙ୍କୁ ଦୁର୍ଗ ମଧ୍ୟକୁ ଘେନି ଗଲେ । ଉଭୟଙ୍କର କେତେକ କ୍ଷଣ କୁଶଳାଦି ସମ୍ଭାଷଣ ଉତ୍ତାରୁ ଉଭୟଙ୍କ ମଧ୍ୟରେ ସନ୍ଧି ସ୍ଥାପିତ ହେଲା । ତାହା ଉତ୍ତାରୁ ଅଲ୍ଲାଉଦ୍ଦୀନ ଭୀମସିଂହଙ୍କୁ କହିଲେ—"ପଦ୍ମିନୀଲାଭ ପ୍ରତ୍ୟାଶାରେ ମୁଁ ପ୍ରଚୁର ଅର୍ଥ-ବ୍ୟୟ, ସୈନ୍ୟକ୍ଷୟ ଏବଂ ଅମାନୁଷିକ ପରିଶ୍ରମ କରି ବିଫଳମନୋରଥ ହେଲି । ଆପଣଙ୍କର ମଧ୍ୟ ପ୍ରଚୁର ସୈନ୍ୟକ୍ଷୟ ହୋଇଅଛି । ଆମ୍ଭମାନଙ୍କ ମଧ୍ୟରେ ଯେଉଁ ସନ୍ଧି ସ୍ଥାପିତ ହେଲା ଏହାକୁ ଚିରସ୍ଥାୟୀ କରିବାର ଇଚ୍ଛା ଥିଲେ, କୃପା କରି ମତେ ଥରେ ପଦ୍ମିନୀଙ୍କୁ ଦେଖାନ୍ତୁ । ମୁଁ ସେହି ମର୍ତ୍ତ୍ୟର ଅପ୍ସରୀଙ୍କୁ ଥରେ ମାତ୍ର ଦୃଷ୍ଟି କରି ଆପଣଙ୍କ ସହ ଚିରବନ୍ଧୁ-ତାସୂତ୍ରରେ ଆବଦ୍ଧ ହୋଇ ଦିଲ୍ଲୀକୁ ପ୍ରତ୍ୟାଗମନ କରିବି । ଭୀମସିଂହ କହିଲେ—ସାକ୍ଷାତ୍ଭାବରେ ଆପଣ ପଦ୍ମିନୀଙ୍କୁ ଦେଖି ପାରିବେ ନାହିଁ, ଦର୍ପଣରେ ପ୍ରତିଫଳିତ ପଦ୍ମିନୀଙ୍କ ପ୍ରତିରୂପ ଦେଖାଇ ପାରିବି । ଅଲ୍ଲା-ଉଦ୍ଦୀନ ସମ୍ମତ ହେବାରୁ, ଭୀମସିଂହ ଦର୍ପଣରେ ପ୍ରତିଫଳିତ ପଦ୍ମିନୀଙ୍କ ପ୍ରତିରୂପ ତାହାଙ୍କୁ ପ୍ରଦର୍ଶନ କରାଇଲେ । ଅଲ୍ଲାଉଦ୍ଦୀନ ଭୀମସିଂହଙ୍କୁ ଶତଶତ ଧନ୍ୟବାଦ ପ୍ରଦାନ କରି ସ୍ୱୀୟ ଶିବିରକୁ ପ୍ରତ୍ୟାଗମନ କଲେ । ଏହା ଉତ୍ତାରୁ ଭୀମସିଂହ ସୌଜନ୍ୟ ପ୍ରଦର୍ଶନାର୍ଥ କତିପୟ ଅନୁଚର ସହ ସାକ୍ଷାତ୍ କରିବା ସକାଶେ ଅଲ୍ଲାଉଦ୍ଦୀନଙ୍କ ଶିବିରକୁ ଗମନ କଲେ । ମାତ୍ର ବିଶ୍ୱାସଘାତକ ଅଲ୍ଲାଉଦ୍ଦୀନ ତାହାଙ୍କୁ ଲୌହଶୃଙ୍ଖଳରେ ଆବଦ୍ଧ ଏବଂ ବନ୍ଦୀ କରି ଚିତୋରବାସିଙ୍କୁ କହି ପଠାଇଲେ ଯେ, ପଦ୍ମି-ନୀଙ୍କୁ ସମର୍ପଣ ନ କଲେ, ଭୀମସିଂହଙ୍କ ମୁକ୍ତିଦାନ କରିବେ ନାହିଁ ।

ପଦ୍ମିନୀ ଏହି ସଂବାଦ ପାଇ କେତେକ ଦିନ ଶୋକରେ ଅଭିଭୂତା ହୋଇ ରହିଲେ । ତହିଁ ଉତ୍ତାରୁ ଶୋକସମ୍ବରଣ କରି ସ୍ୱୀୟ ପିତୃବ୍ୟ ସିଂହଳରାଜ ଗୋରା ଏବଂ ତାହାଙ୍କ ପୁତ୍ର କିଶୋରବୟସ୍କ ବାଦଲଙ୍କ ସଙ୍ଗେ ପରାମର୍ଶ କରି, ଗୋରାଙ୍କୁ ଅଲ୍ଲାଉଦ୍ଦୀନଙ୍କ ପାଖକୁ ଦୂତରୂପେ ପ୍ରେରଣ କଲେ । ଦୂତ ଅଲ୍ଲାଉଦ୍ଦୀନଙ୍କୁ କହିଲେ, "ସ୍ୱାମିଙ୍କୁ ମୁକ୍ତ କରିବା ମାନସରେ, ପଦ୍ମିନୀ ଆତ୍ମସମର୍ପଣ କରିବାକୁ ସମ୍ମତା ହୋଇଅଛନ୍ତି ।" ଅଲ୍ଲାଉଦ୍ଦୀନ ଏହି ସଂବାଦ ପ୍ରାପ୍ତିରେ ଆନନ୍ଦସାଗରରେ ନିମଗ୍ନ ହୋଇ ଦୂତଙ୍କୁ ବହୁଧନରତ୍ନ ଦାନ କରି କହିଲେ,—"ଦୂତବର ତୁମ୍ଭେ ଅବିଳମ୍ବେ ଯାଇ ପଦ୍ମିନୀଙ୍କୁ ଘେନି ଆସ, ସେ ଯେପରି ଆଦେଶ ପ୍ରଦାନ କରିବେ, ମୁଁ ସେହିକ୍ଷଣି ତାହା ପାଳନ କରିବି, ତୁମ୍ଭେ ପଦ୍ମିନୀଙ୍କୁ ମୋ ହସ୍ତରେ ସମର୍ପଣ କଲେ, ମୁଁ ତୁମ୍ଭଙ୍କୁ ରାଜ୍ୟେଶ୍ୱର କରିବି ।"

ଗୋରା ବାହ୍ୟିକ ଆନନ୍ଦ ପ୍ରକାଶ କରି କହିଲେ—"ପଦ୍ମିନୀଙ୍କର ବହୁଶତ ସଖୀ ଏବଂ ପରିଚାରିକା ଅଛନ୍ତି । ପଦ୍ମିନୀ ଆପଣଙ୍କ ନିକଟକୁ ଆସିଲେ, ସେମାନେ ତାହାଙ୍କ ସମଭିବ୍ୟାହାରରେ ଆସି ଏହିଠାରୁ ଚିରଦିନ ସକାଶେ ବିଦାୟଗ୍ରହଣ କରିବାକୁ ମାନସ କରିଅଛନ୍ତି । ପଦ୍ମିନୀ ମଧ୍ୟ ସେମାନଙ୍କୁ ସମଭିବ୍ୟାହାରରେ ଆଣିବାକୁ ସମ୍ମତା ହୋଇଅଛନ୍ତି । ଏଥିରେ ଆପଣଙ୍କର ଅଭିମତ ଜାଣିଲେ ମୁଁ ତଦନୁସାରେ କାର୍ଯ୍ୟ କରିବି ।"

ଅଲ୍ଲାଉଦ୍ଦୀନ କହିଲେ—"ପଦ୍ମିନୀଙ୍କ ଯେପରି ଅଭିରୁଚି ମୁଁ ତଦନୁସାରେ କାର୍ଯ୍ୟ କରିବି । ଆଉ ଦିଲ୍ଲୀଶ୍ୱରୀଙ୍କ ବହୁସଂଖ୍ୟକ ପରିଚାରିକା ସହ ଆଗମନ କର୍ତ୍ତବ୍ୟ ଅଟେ । ସେମାନଙ୍କ ବିଶେଷ ସମ୍ମାନ ପ୍ରଦର୍ଶନ କରିବାକୁ ସୈନ୍ୟମାନଙ୍କ ପ୍ରତି ବିହିତ ଆଦେଶ ପ୍ରଦାନ କରିବି ।"

ଗୋରା କହିଲେ—"କାଲେ ଆପଣଙ୍କର ସୈନ୍ୟମାନେ କୌତୂ-

ହତାଶାହ୍ୱ ହୋଇ, ପଦ୍ମିନୀଙ୍କ ପରଗ୍ରରକାମାନଙ୍କ ପ୍ରତି କୌଣସିପ୍ରକାର ଅପମାନ ପ୍ରଦର୍ଶନ କରିବେ, ଏଥି ସକାଶେ କେତେକଜଣ ରକ୍ଷୀସୈନ୍ୟ ଆସିଲେ ଭଲ ହୁଅନ୍ତା ନାହିଁ କି ?”

ଅଲ୍ଲାଉଦ୍ଦୀନ କହିଲେ—“ନା ତାହା ହେବ ନାହିଁ । ମୋର ଶିବର ମଧ୍ୟକୁ ଶତ୍ରୁସୈନ୍ୟର ଆଗମନ ନିଷିଦ୍ଧ । ମୁଁ ମୋର ସୈନ୍ୟମାନଙ୍କୁ ବିଶେଷରୂପେ ସାବଧାନ ଓ ସତର୍କ କରି ଦେବ ; ସେମାନେ ମୋର ଆଦେଶ ଲଙ୍ଘନ କରିବାକୁ ସାହସୀ ହେବେ ନାହିଁ । ମୁଁ ଶପଥବାକ୍ୟ ପ୍ରଦାନ କରି କହୁଅଛି, ପଦ୍ମିନୀଙ୍କ ପରିଗ୍ରରିକାବର୍ଗ ସ୍ୱସ୍ଥାନରେ ପ୍ରତ୍ୟାଗମନ କରିବେ ।”

ଗୋରା ବନୀତଭାବରେ ସମ୍ରାଟଙ୍କୁ ଅଭିବାଦନ କରି ଚିତୋରଦୁର୍ଗକୁ ପ୍ରତ୍ୟାଗମନ କଲେ । ଅଲ୍ଲାଉଦ୍ଦୀନ ପଦ୍ମିନୀଙ୍କ ମହାସମାରୋହ ପ୍ରଦର୍ଶନ କରି ଅଭ୍ୟର୍ଥନା କରିବେ ବୋଲି ସେଥିର ଆୟୋଜନରେ ପ୍ରବୃତ୍ତ ହେଲେ । ନିର୍ଦ୍ଦିଷ୍ଟ ଦିବସରେ ପଦ୍ମିନୀ ସପ୍ତଶତ ଶିବିକାରେ ସପ୍ତଶତ ପରଗ୍ରରିକାଙ୍କୁ ଘେନି, ଅଲ୍ଲାଉଦ୍ଦୀନଙ୍କ ଶିବିରକୁ ଆତ୍ମସମର୍ପଣ କରିବାକୁ ଯାତ୍ରା କଲେ । ପ୍ରତି ଶିବିକା ଛଅଜଣ ବାହକଦ୍ୱାରା ବାହିତ ହେଉଥିଲା । ଶିବିକାମାନ ଅଲ୍ଲାଉଦ୍ଦୀନଙ୍କ ବସ୍ତ୍ରାବାସ ସନ୍ନିକଟରେ ରକ୍ଷିତ ହେଲାକ୍ଷଣି, ପଦ୍ମିନୀ ଗୋରାଙ୍କଦ୍ୱାରା ସମ୍ରାଟଙ୍କୁ କହିପଠାଇଲେ—“ମୁଁ ଯେତେ-ବେଳେ ଆତ୍ମସମର୍ପଣ କରିବାକୁ ଆପଣଙ୍କ ଶିବିର ମଧ୍ୟକୁ ଆସି ଅଛି, ତେତେବେଳେ ଆପଣଙ୍କ ଆଦେଶ ଏବଂ ଅନୁମତି ନ ନେଇ କୌଣସି କାର୍ଯ୍ୟ କରିବ ନାହିଁ । ଭୀମସିଂହ ଏଠାରୁ ପ୍ରସ୍ଥାନ କରିବା ପୂର୍ବେ ମୁଁ ନିର୍ଜ୍ଜନରେ ତାହାଙ୍କ ନିକଟରୁ ଚିରବିଦାୟ ଗ୍ରହଣ କରିବ । ଆପଣ ମୋର ଏହି ପ୍ରାର୍ଥନାରେ ଅନୁମତି ପ୍ରଦାନ କରି ମତେ କୃତାର୍ଥ କରିବା ହେବେ ।”

ପଦ୍ମିନୀଙ୍କୁ ପ୍ରୀତ କରିବା ଉଦ୍ଦେଶ୍ୟରେ ଅଲ୍ଲାଉଦ୍ଦୀନ ଅନୁଚରମାନଙ୍କୁ ଆଦେଶ ଦେବାରୁ, ଭୀମସିଂହ ବିମୁକ୍ତଶୃଙ୍ଖଳ ହୋଇ ସମ୍ରାଟ୍ ସମୀପକୁ ଆନୀତ ହେଲେ । ଭୀମସିଂହ ସମ୍ରାଟ୍ ସମୀପରେ ଉପସ୍ଥିତ ହୋଇ ସମ୍ରାଟଙ୍କ ସନ୍ନିକଟରେ ଗୋରାଙ୍କୁ ଦଣ୍ଡାୟମାନ ଦେଖି କ୍ରୋଧରେ ପ୍ରଜ୍ୱଳିତ ହୋଇ—"ତୁ କ୍ଷତ୍ରିୟକୁଳାଙ୍ଗାର, ତୁ ପବିତ୍ର ସୂର୍ଯ୍ୟବଂଶକୁ * କଳଙ୍କିତ କଲୁ", କହି, ସିଂହବିକ୍ରମରେ ଲମ୍ଫ ପ୍ରଦାନପୂର୍ବକ ଦୃଢ଼ମୁଷ୍ଟିରେ ଗୋରାଙ୍କ କଣ୍ଠ ଧାରଣ କରି ପେଷଣ କଲେ । "ମତେ ଯାହା ଭାବଅନ୍ତ, ମୁଁ ତାହା ନୁହେ, ଭୀମସିଂହଙ୍କ କର୍ଣ୍ଣରେ କହି, ଅମିତପରାକ୍ରମ ଗୋରା, ଭୀମସିଂହଙ୍କ ବଜ୍ରମୁଷ୍ଟିରୁ ଆପଣାକୁ ମୁକ୍ତ କଲେ । ଯେଉଁ ବସ୍ତ୍ରାବାସ ମଧ୍ୟରେ ପଦ୍ମିନୀ ବିଶ୍ରାମ କରୁଥିଲେ, ଭୀମସିଂହ ତଦ୍‌ବିଦାୟଗ୍ରହଣ ମାନସରେ ତନ୍ମଧ୍ୟକୁ ଗମନ କଲେ । କିୟତ୍‌କ୍ଷଣ ଉତ୍ତାରୁ ଅଲ୍ଲାଉଦ୍ଦୀନ ମନେ ମନେ ଚିନ୍ତା କଲେ—"ଭୀମସିଂହ ଯେତେ ଦିନ ଜୀବିତ ରହିବେ ପଦ୍ମିନୀ ତାହାଙ୍କୁ ବିସ୍ମୃତ ହୋଇ ପାରିବେ ନାହିଁ । ଭୀମସିଂହ ବିମୁକ୍ତ ହେଲେ ସର୍ବଦା ମୋର ଅନିଷ୍ଟ ଚିନ୍ତାରେ ପ୍ରବୃତ୍ତ ହେବେ । ଏପରି ଅବସ୍ଥାରେ ଭୀମସିଂହଙ୍କୁ ମୁକ୍ତିପ୍ରଦାନ କରିବା ଉଚିତ ହେଉ ନାହିଁ ।" ବିଶ୍ୱାସଘାତକ ସମ୍ରାଟ୍ ଏହା ଚିନ୍ତା କରି, ଏବଂ ପଦ୍ମିନୀଙ୍କ ବସ୍ତ୍ରାବାସରୁ ଭୀମସିଂହଙ୍କ ପ୍ରତ୍ୟାଗମନର ବିଲମ୍ବ ଦେଖି, ସନ୍ଦିଗ୍ଧଚିତ୍ତରେ ଉକ୍ତ ବସ୍ତ୍ରାବାସ ମଧ୍ୟକୁ ଗମନ କଲେ । ସମ୍ରାଟ୍ ବସ୍ତ୍ରାବାସ ମଧ୍ୟରେ ଭୀମସିଂହ ଏବଂ ପଦ୍ମିନୀଙ୍କ ପରିବର୍ତ୍ତରେ ଏକ ଭୀମକାୟ ଗଜପୃଷ୍ଠ ବୀରବାଳକକୁ ଉପବିଷ୍ଟ ଥିବାର ଦେଖି କ୍ରୁଦ୍ଧ ହୋଇ ରକ୍ଷିବର୍ଗଙ୍କୁ ଆହ୍ୱାନ କଲେ । ପଦ୍ମିନୀଙ୍କ ଖୁଲ୍ଲତାତପୁତ୍ର ପ୍ରଚଣ୍ଡକାୟ ବୀରବାଳକ ବାଦଲ ସିଂହବିକ୍ରମରେ ସେହିକ୍ଷଣି ସମ୍ରାଟଙ୍କୁ ଆକ୍ରମଣ

* ଚିତୋରର ରାଜପୁତମାନେ ସୂର୍ଯ୍ୟବଂଶୀୟ ଅର୍ଥାତ୍ ରାମଚନ୍ଦ୍ରଙ୍କ ବଂଶଧର ଅଟନ୍ତି ।

କଲେ । ଋଷିମାନେ ଉପସ୍ଥିତ ହୋଇ ପ୍ରତିରୋଧ କରି ନ ଥିଲେ ଅଲ୍ଲାଉଦ୍ଦୀନ ସେହିଠାରେ ମର୍ତ୍ତ୍ୟଲୀଳା ସମ୍ବରଣ କରିଥାନ୍ତେ । ଋଷିମାନେ ବହୁକଷ୍ଟରେ ସେହି କାଳରୂପୀ ରାଜପୁତବାଳକଙ୍କ କବଳରୁ କ୍ଷତବିକ୍ଷତାଙ୍ଗ ସମ୍ରାଟଙ୍କ ଉଦ୍ଧାରସାଧନ କଲେ । ଏହି କାର୍ଯ୍ୟରେ ପାଞ୍ଚଜଣ ଋଷୀ ସୈନ୍ୟ ବାଦଲହସ୍ତରେ ପ୍ରାଣତ୍ୟାଗ କରିଥିଲେ । ପ୍ରତି ଶିବିକାରେ ଚିତୋରର ଜଣେ୨ ପ୍ରସିଦ୍ଧ ବୀର ଛଦ୍ମବେଶରେ ଆଗମନ କରିଥିଲେ ଏବଂ ସମରଜ୍ଞପୁଣ ରାଜପୁତ ଯୋଦ୍ଧାମାନେ ଶିବିକା ମଧ୍ୟରେ ଅସ୍ତ୍ରାଦି ଗୋପନ କରି ରଖି, ବାହକବେଶରେ ଆସିଥିଲେ । ଏହି ରାଜପୁତ ବୀରମାନେ ଏହି ସମୟରେ ସ୍ୱ୨ ପ୍ରକୃତରୂପ ଧାରଣ କରି ବିପୁଳବିକ୍ରମରେ ମୁସଲମାନସୈନ୍ୟଙ୍କୁ ଆକ୍ରମଣ କଲେ । ଏହି ସୁଯୋଗରେ ଭୀମସିଂହ ଏବଂ ପଦ୍ମିନୀ ଅଶ୍ୱାରୋହଣରେ ଚିତୋର ଦୁର୍ଗକୁ ପଳାୟନ କଲେ । ସମ୍ରାଟସୈନ୍ୟ ରାଜପୁତମାନଙ୍କୁ ଅତିକ୍ରମ କରି ସେମାନଙ୍କୁ ଧୃତ କରି ପାରିଲେ ନାହିଁ । ମାତ୍ର ଏହି କେତେକ ସହସ୍ର ରାଜପୁତ ବହୁସହସ୍ର ମୁସଲମାନସୈନ୍ୟଙ୍କୁ ନିହତ କରି ମହାସମରରେ ସମସ୍ତେ ପ୍ରାଣତ୍ୟାଗ କଲେ । ଏହି କାରଣରୁ ଚିତୋର ଦୁର୍ଗ ବୀରଶୂନ୍ୟ ହେଲା ।

ଅଲ୍ଲାଉଦ୍ଦୀନ ଭଗ୍ନମନୋରଥ ହୋଇ ଦିଲ୍ଲୀକୁ ପ୍ରତ୍ୟାଗମନ କଲେ । ମାତ୍ର ଏକବର୍ଷ ଉତ୍ତାରୁ ବିପୁଳ ଆୟୋଜନ କରି, ପୂର୍ବାପେକ୍ଷା ଅଧିକସଂଖ୍ୟକ ସୈନ୍ୟସହ ଆଗମନପୂର୍ବକ ପୁଣି ଚିତୋର ଅବରୋଧ କଲେ । ଚିତୋରର ବୀରସଂଖ୍ୟାର ନ୍ୟୂନତା ହେତୁ ଚିତୋରବାସୀ ଦୁର୍ଗରକ୍ଷା କରିବାକୁ ସକ୍ଷମ ହେଲେ ନାହିଁ । ପଦ୍ମିନୀ ଅନ୍ୟାନ୍ୟ ରାଜପୁତରମଣୀମାନଙ୍କ ସହ ପ୍ରଜ୍ୱଳିତ ଅଗ୍ନିକୁଣ୍ଡରେ ଆତ୍ମବିସର୍ଜ୍ଜନ କଲେ । ଭୀମସିଂହ ଚିତୋରର ଅବଶିଷ୍ଟ ବୀରମାନଙ୍କ ସହ ମୁସଲମାନମାନଙ୍କ

ସଙ୍ଗେ ଘୋରତର ସମର କରି ପ୍ରାଣତ୍ୟାଗ କଲେ । ଏହି ସମୟରେ କେତେକଜଣ ରାଜପୁତରମଣୀ, ସର୍ବାଙ୍ଗ ବର୍ମ୍ମାଚ୍ଛାଦିତ କରି ଘୋରତର ସମର କରିଥିଲେ । ଏମାନଙ୍କ ହସ୍ତରେ ବହୁସଂଖ୍ୟକ ଯବନମୁଣ୍ଡ ଭୂଲୁଣ୍ଠିତ ହୋଇଥିଲା । ପରିଶେଷରେ ଏହି ରମଣୀମାନେ ଯବନମାନଙ୍କ ଅସ୍ତ୍ରାଘାତରେ କ୍ଷତବିକ୍ଷତାଙ୍ଗ ହୋଇ ସମ୍ମୁଖସମରରେ ପ୍ରାଣତ୍ୟାଗ କରିଥିଲେ ।

କକ୍ଷ୍ମାମଣି—ଆଈ, ସେଉଠୁଁ ଅଲ୍ଲାଉଦ୍ଦୀନ କଅଣ କଲା ?

ଆଈ—ଅଲ୍ଲାଉଦ୍ଦୀନ ଯୁଦ୍ଧରେ ଜୟଲାଭ କରି, ପଦ୍ମିନୀଙ୍କୁ ହସ୍ତଗତ କରିବା ଉଦ୍ଦେଶ୍ୟରେ, ମହାହର୍ଷରେ ଦୁର୍ଗମଧ୍ୟରେ ପ୍ରବେଶ କରି ଦେଖିଲେ, ଅଗ୍ନିଦେବତା ପଦ୍ମିନୀଙ୍କ ଚନ୍ଦ୍ର ମୁଖ ରଖି ନାହାନ୍ତି । ଏହା ଦେଖି ଅଲ୍ଲାଉଦ୍ଦୀନ ମହା ଅକ୍ରୋଶରେ ଚିତୋର ନଗରର ଧ୍ୱଂସସାଧନ କରି ଦିଲ୍ଲୀକୁ ପ୍ରତ୍ୟାଗମନ କଲେ ।

ଆଉ ଜଣେ ରାଜପୁତ ରମଣୀଙ୍କ ଅଦ୍ଭୁତ ପ୍ରଭୁଭକ୍ତିର କଥା କହୁଅଛି ଶୁଣ । ଯେଉଁ ସମୟରେ ଚିତୋରରାଜ ଉଦୟସିଂହ ପଞ୍ଚମବର୍ଷୀୟ ବାଳକ ଥିଲେ, ସେହି ସମୟରେ ଚିତୋରବାସିମାନେ, ଉଦୟସିଂହଙ୍କ ବୟଃପ୍ରାପ୍ତି ପର୍ଯ୍ୟନ୍ତ ବନବୀର ନାମକ ଏକବ୍ୟକ୍ତିଙ୍କୁ ରାଜପ୍ରତିନିଧି ପଦରେ ନିଯୁକ୍ତ କଲେ । ସେହି ସମୟରେ ଉଦୟସିଂହ ଏବଂ ବିକ୍ରମଜିତ୍ ନାମକ ରାଜବଂଶୀୟ ଅପର ଏକବ୍ୟକ୍ତି ବ୍ୟତୀତ ରାଜସିଂହାସନର ଅନ୍ୟ କେହି ଉତ୍ତରାଧିକାରୀ ନ ଥିଲେ । ବନବୀର ଦୁରାକାଂକ୍ଷାବୃତ୍ତିର ବଶବର୍ତ୍ତୀ ହୋଇ ଏହି ଦୁଇଜଣଙ୍କୁ ନିହତ କରି ସିଂହାସନ ଅଧିକାର କରିବାକୁ ସଙ୍କଳ୍ପ କଲେ । ଉଦୟସିଂହଙ୍କ ଧାତ୍ରୀ ପାନ୍ନା, ବନବୀରଙ୍କ ଦୁଷ୍ଟାଭିପ୍ରାୟ ଅବଗତ ହୋଇ, ନିମେଷମାତ୍ର ଉଦୟସିଂହଙ୍କୁ ଚକ୍ଷୁର ଅନ୍ତରାଳ କରୁ ନ ଥିଲେ । ଏକ ରାତ୍ରରେ ବାଳକ ଉଦୟସିଂହ ଶ୍ରେ-

ନାନ୍ତେ ନିଦ୍ରିତ ହୋଇଅଛନ୍ତି, ଏମନ୍ତ ସମୟରେ ଅନ୍ତଃପୁର ମଧ୍ୟରେ କୋଳାହଳ ଶ୍ରବଣ କରି ପାନ୍ନା ଅତ୍ୟନ୍ତ ଉଦ୍ବିଗ୍ନ ହେଲେ । ସେହି ସମୟରେ ଉଦୟସିଂହଙ୍କ ଭୃତ୍ୟ ଭୋଜନପାତ୍ର ପରିଷ୍କାର କରିବାକୁ ଆସି, ପାନ୍ନାଙ୍କୁ ବନବୀରକର୍ତ୍ତୃକ ବିକ୍ରମଜିତଙ୍କ ନିଧନସମ୍ବାଦ ପ୍ରଦାନ କଲା । ବିକ୍ରମଜିତଙ୍କୁ ହତ୍ୟା କରି ବନବୀର ଉଦୟସିଂହଙ୍କୁ ହତ୍ୟା କରିବାକୁ ଆସିବେ, ଏଥିରେ ଧାତ୍ରୀର ଲବମାତ୍ର ସନ୍ଦେହ ରହିଲା ନାହିଁ । ପାନ୍ନା ଉଦୟସିଂହଙ୍କ ରକ୍ଷାର ଉପାୟ ନିର୍ଦ୍ଧାରଣ କରି, ଗୋଟିଏ ବଡ଼ ଫଲଟୋକେଇରେ ଉଦୟସିଂହଙ୍କୁ ଶୁଆଇ ତାହାଙ୍କ ଉପରେ ବେଲପତ୍ର, ଫଳ, ଏବଂ ଚାଉଳ ପ୍ରଭୃତି ଥୋଇ, ଭୃତ୍ୟଙ୍କୁ କହିଲେ, ତୁମ୍ଭେ ଏହି ଟୋକେଇ ନେଇ ଦୁର୍ଗ ବାହାରେ ନଦୀକୂଳରେ ଅପେକ୍ଷା କରିବ, ମୁଁ ଅଳ୍ପକ୍ଷଣ ଉତ୍ତାରୁ ଯାଉଅଛି । ବିଶ୍ୱାସୀ ଭୃତ୍ୟ ଟୋକେଇ ନେଇ ଗୃହରୁ ନିର୍ଗତ ହେଲା କ୍ଷଣି, ପାନ୍ନା ଉଦୟସିଂହଙ୍କ ଶଯ୍ୟାରେ ସ୍ୱୀୟ ଶିଶୁପୁତ୍ରକୁ ଶୁଆଇ ଶଯ୍ୟାତ୍ୟାଗ ନ କରୁଣୁ, ବନବୀର ପିଶାଚମୂର୍ତ୍ତିରେ ହସ୍ତରେ ସୁତୀକ୍ଷ୍ଣ ଛୁରିକା ନେଇ ଗୃହମଧ୍ୟରେ ଉପସ୍ଥିତ ହେଲେ । ବନବୀର ଗୃହମଧ୍ୟରେ ପ୍ରବେଶ କରି, ଉଦୟସିଂହ କାହାନ୍ତି, ଧାତ୍ରିଙ୍କୁ ପ୍ରଶ୍ନ କଲା କ୍ଷଣି, ଧାତ୍ରୀ ନିଶବ୍ଦରେ ଅଙ୍ଗୁଳି ନିର୍ଦ୍ଦେଶ କରି ନିଦ୍ରାଭିଭୂତ ସ୍ୱୀୟ ପୁତ୍ରକୁ ଦେଖାଇ ଦେଲେ । ବନବୀର ସେହିକ୍ଷଣି ନିଦ୍ରିତ ବାଳକର ହୃଦୟରେ ହସ୍ତସ୍ଥିତ ଛୁରିକା ଆମୂଳ ବିଦ୍ଧ କରି ଦେଇ ପ୍ରସ୍ଥାନ କଲେ । ଧାତ୍ରୀ ଏହି ହୃଦୟବିଦାରକ ଦୃଶ୍ୟ ଦେଖି, ପ୍ରକାଶ ହେବା ଭୟରେ କ୍ରନ୍ଦନ ସୁଦ୍ଧା କଲେ ନାହିଁ । ପାନ୍ନା ଶୋକସନ୍ତପ୍ତ ହୃଦୟରେ ଦୁର୍ଗରୁ ନିର୍ଗତା ହେଲେ ଏବଂ ଭୃତ୍ୟସହ ମିଳିତା ହୋଇ ଉଦୟସିଂହଙ୍କୁ ନିରାପଦସ୍ଥାନରେ ରଖି ଆସିଲେ । ପାନ୍ନା ସେହିପରି କରି ନ ଥିଲେ ସେହି ପବିତ୍ର ସୂର୍ଯ୍ୟବଂଶ ସେହିଦିନ ବିଲୁପ୍ତ ହୋଇଥାନ୍ତା । ପାନ୍ନା ଚିତୋରଦୁର୍ଗରୁ

ପ୍ରତ୍ୟାଗମନ କରି ସ୍ୱୀୟ ପୁତ୍ରର ସତ୍‌କାର କଲେ । ଏଣେ ଉଦୟ ସିଂହ ଭିନ୍ନ ନାମରେ ଏକ ରାଜପୁତ ସର୍ଦ୍ଦାରଙ୍କ ଆଶ୍ରୟରେ ରହି ପାଳିତ ହେଲେ । ଉଦୟ ସିଂହ ବୟଃପ୍ରାପ୍ତ ହୋଇ ସ୍ୱୀୟ ପୈତୃକ ସିଂହାସନ ଅଧିକାର୍ ଏବଂ ବନବୀରଙ୍କୁ ରାଜ୍ୟରୁ ନିର୍ବାସିତ କରି ଦେଲେ ।

ରାତି ହେଲାଣି ଚାଲ ଶୋଇବା ।



ବିଂଶ ସନ୍ଧ୍ୟା ।

## ବିବିଧ-ପ୍ରସଙ୍ଗ । (୨)

ଅଛି—ତୁମ୍ଭେମାନେ ଦାସଦାସୀଙ୍କ ପ୍ରତି ସଦ୍‌ବ୍ୟବହାର କରିବ । ସେମାନଙ୍କ ଅଭାବ ପ୍ରତି ଦୃଷ୍ଟି ରଖିବ ଏବଂ ସେମାନେ ପୀଡ଼ିତ ହେଲେ ସେମାନଙ୍କୁ ବିଶ୍ରାମ କରିବାକୁ ଅବସର ଦେଇ ଔଷଧ ଓ ସୁପଥ୍ୟ ଦେବ । ସ୍ନେହ ପ୍ରାପ୍ତ ହେଲେ ଦାସଦାସୀମାନେ ପ୍ରଭୁ ଗୃହକୁ ଆପଣାର ଗୃହ, ପ୍ରଭୁ ଦ୍ରବ୍ୟକୁ ଅପଣା ଦ୍ରବ୍ୟ, ପ୍ରଭୁଙ୍କ ନିନ୍ଦା ପ୍ରଶଂସାକୁ ଅପଣାର ନିନ୍ଦା ପ୍ରଶଂସା ବୋଲି ମନେ କରନ୍ତି । ସଦ୍‌ବ୍ୟବହାର କଲେ ମନ୍ଦପ୍ରକୃତି ଦାସଦାସୀ ମଧ୍ୟ ସତ୍‌ପ୍ରକୃତି ହୁଅନ୍ତି । ସେମାନେ ଅପରାଧ କଲେ କ୍ଷମା କରିବ, ଏବଂ ସେମାନଙ୍କ ମନ୍ଦସ୍ୱଭାବ ସଂଶୋଧନ କରିବା ନିମିତ୍ତେ ମଧୁର ବଚନରେ ଉପଦେଶ ଦେବ । ଯେଉଁମାନେ ଦାସଦାସୀଙ୍କ ପ୍ରତି ଅସଦ୍‌ବ୍ୟବହାର କରନ୍ତି ସେମାନଙ୍କୁ ପରିଣାମରେ କ୍ଷତିଗ୍ରସ୍ତ ହେବାକୁ ହୁଏ । ସେପରି ସ୍ଥଳରେ ଦାସ ଦାସୀମାନେ ମମତାଶୂନ୍ୟ ହୋଇ ପ୍ରଭୁ ଗୃହରୁ ନାନାଦ୍ରବ୍ୟ ହସ୍ତାନ୍ତର କରନ୍ତି । ପ୍ରଭୁଙ୍କ କୌଣସି ଦ୍ରବ୍ୟ ଅପଚୟ କିମ୍ବା ନଷ୍ଟ ହେଉଥିବାର ଦେଖିଲେ ସୁଦ୍ଧା ନିବାରଣ କରନ୍ତି ନାହିଁ । ଅନ୍ୟ କଥା ଚେଣିଛ ଥାଉ ପ୍ରଭୁ କିମ୍ବା ପ୍ରଭୁପତ୍ନୀ ପୀଡ଼ିତ ହେଲେ ମଧ୍ୟ ସେବା ଶୁଶ୍ରୂଷା କରନ୍ତି ନାହିଁ । ଯେଉଁ ଦାସଦାସୀର ସ୍ୱଭାବ ଏପରି ଦୁଷ୍ଟ ଯେ କ୍ଷମା ଏବଂ ସଂଶୋଧନ କରିବାକୁ ଚେଷ୍ଟା କଲେ ମଧ୍ୟ ସଂଶୋଧିତ ହୁଏ ନାହିଁ, ସେପରି ଦାସଦାସୀଙ୍କୁ ଗୃହରୁ ବହିଷ୍କୃତ କରି ଦେବ । କାରଣ ସେପରି ଲୋକର ସହବାସରେ ଅନ୍ୟର ସ୍ୱଭାବ ମନ୍ଦ ହୁଏ । ଏକ ଧନୀ ମହାଜନଙ୍କର ଅନେକ

ଗଡ଼ିଏ ଦାସଦାସୀ ଥିଲେ । ମହାଜନଙ୍କର କେତେକ ଖଣ୍ଡି ବାଣିଜ୍ୟ ଜାହାଜ ଥିଲା । ମହାଜନ ନାନାଦେଶକୁ ବାଣିଜ୍ୟଦ୍ରବ୍ୟ ପ୍ରେରଣ ଏବଂ ନାନା ଦେଶରୁ ବାଣିଜ୍ୟଦ୍ରବ୍ୟ ଅଣାଇ ବାଣିଜ୍ୟ କରୁଥିଲେ । ଦୂରଦେଶରୁ ଦିନେ ସଂବାଦ ଆସିଲା ମହାଜନଙ୍କ ସମସ୍ତ ଜାହାଜ ବୁଡ଼ି ଯାଇଅଛି । ମହାଜନ ଏହି ସଂବାଦରେ ମର୍ମାନ୍ତିକ ବେଦନା ପାଇ ପୀଡ଼ିତ ହେଲେ । ପୀଡ଼ା କ୍ରମଶଃ ବୃଦ୍ଧି ହୋଇ ମହାଜନଙ୍କୁ ଇହଲୋକରୁ ବିଦାୟ ଦେଲା । ସ୍ତ୍ରୀ ଏବଂ ଗୋଟିଏ ଶିଶୁପୁତ୍ର ବ୍ୟତୀତ ମହାଜନଙ୍କର ଅନ୍ୟ କେହି ନ ଥିଲେ । ମହାଜନଙ୍କ ସ୍ତ୍ରୀ ଯଥାସର୍ବସ୍ୱ ବିକ୍ରୟ କରି ସ୍ୱାମିଙ୍କ ଅନ୍ତ୍ୟେଷ୍ଟିକ୍ରିୟା ସମ୍ପନ୍ନ ଏବଂ ଭୃତ୍ୟମାନଙ୍କ ପ୍ରାପ୍ୟ ବେତନ ପ୍ରଦାନ କରି ବିଦାୟ ଦେଲେ । ଜଣେ ଭୃତ୍ୟ ଏବଂ ତାହାର ସ୍ତ୍ରୀ ବ୍ୟତୀତ ଅନ୍ୟାନ୍ୟ ସମସ୍ତ ଭୃତ୍ୟ ବେତନ ପ୍ରାପ୍ତ ହୋଇ ପ୍ରସ୍ଥାନ କଲେ । ଉକ୍ତ ଭୃତ୍ୟ ଏବଂ ତାହାର ସ୍ତ୍ରୀ ପ୍ରଭୁ-ପତ୍ନୀକୁ ସାଶ୍ରୁଲୋଚନରେ କହିଲେ—"ସମ୍ପଦକାଳରେ ଆପଣଙ୍କ ଆଶ୍ରୟ ପାଇ ଆମ୍ଭେମାନେ ପରମସୁଖରେ ଥିଲୁଁ, ବିପଦ କାଳରେ ଆପଣଙ୍କୁ କିପରି ଛାଡ଼ିଯିବୁଁ ? ଆପଣଙ୍କଠାରେ ଆମ୍ଭର ଏତିକି ମାଗୁଣି ଆମ୍ଭମାନଙ୍କୁ ବିଦାୟ ଦେବେ ନାହିଁ ।"

ପ୍ରଭୁପତ୍ନୀ କହିଲେ—ତୁମ୍ଭ ଦୁଇଜଣଙ୍କୁ ମୁଁ ଆପଣାର ପୁତ୍ର କନ୍ୟା ପରି ଜ୍ଞାନ କରେଁ । ଆଜି ଆମ୍ଭେ ମା ପୁଅ ଦୁଇଜଣ କଅଣ ଖାଇବୁଁ ତାହା ଠିକ୍ ନାହିଁ । ତୁମ୍ଭେମାନେ କଅଣ ଖାଇ ରହିବ ? ଏହିଠାରେ ଉପବାସରେ ରହିବାଠାରୁ, ଅନ୍ୟ କୌଣସି ସ୍ଥାନରେ କାର୍ଯ୍ୟ ଗ୍ରହଣ କଲେ ସୁଖରେ ରହିବ ବୋଲି ତୁମ୍ଭମାନଙ୍କୁ ବିଦାୟ ଦେଉଅଛି ।

ଭୃତ୍ୟର ପତ୍ନୀ ଗଦ୍‌ଗଦବଚନରେ କହିଲା—ମା, ଏହିଘରେ ଉପ-

ବାସରେ ରହିଲେ ସୁଦ୍ଧା ଆମ୍ଭମାନଙ୍କର କଷ୍ଟ ହେବ ନାହିଁ, ମାତ୍ର ତୁମ୍ଭଙ୍କୁ ଛାଡ଼ି, ଅନ୍ୟସ୍ଥାନରେ ପ୍ରତ୍ୟହ ପରମାନ୍ନ ଭୋଜନ କଲେହେଁ ଆମ୍ଭମାନଙ୍କ ତୃପ୍ତି ହେବ ନାହିଁ । ଆମ୍ଭମାନଙ୍କ ଖାଇବା କଥାରେ ଆପଣ ଆଉ ଚିନ୍ତା କରିବେ ନାହିଁ । ଆମ୍ଭମାନଙ୍କୁ କାଢ଼ି ଦେଲେ ଏ ଜୀବନ ଆଉ ରଖିବୁଁ ନାହିଁ ।

ଭୃତ୍ୟ ପ୍ରଭୁପତ୍ନୀଙ୍କ ଚରଣଧାରଣ କରି କ୍ରନ୍ଦନ କରୁ୨ କହିଲା— ମା, ଆମ୍ଭ ଦୁଇଜଣଙ୍କୁ ଯେଉଁ ବେତନ ଦେଇଅଛନ୍ତି ତାହା ନେଇ ଭୋଜନର ଦ୍ରବ୍ୟାଦି କ୍ରୟ କରନ୍ତୁ, ମୁଁ ଆପଣଙ୍କର ପୁଅ, ମା ପୁଅର ଖାଏ ନାହିଁକି ?

ସେମାନଙ୍କର ଏହିପରି କଥା ଶୁଣି ପ୍ରଭୁପତ୍ନୀ ଅଶ୍ରୁପାତ କରୁଥିଲେ । ଅଶ୍ରୁସମ୍ବରଣପୂର୍ବକ ଭୃତ୍ୟଠାରୁ ବେତନ ଗ୍ରହଣ କରି କହିଲେ ମୁଁ ମନେ କରିଥିଲି—ଏହି ସଂସାରରେ ମୋର ଏହି ଶିଶୁପୁତ୍ର ବ୍ୟତୀତ ଅନ୍ୟ କେହି ନାହାନ୍ତି; ମାତ୍ର ଆଜି ଜାଣିଲି ମୋର ଆଉ ଯୋଡ଼ିଏ ପୁତ୍ର ଏବଂ କନ୍ୟା ଅଛନ୍ତି ।

ଭୃତ୍ୟ ଓ ଭୃତ୍ୟପତ୍ନୀ ସେହି ଘରେ ରହି ଅତି ପ୍ରଭୁଷରୁ ଉଠି ଗୃହର କାର୍ଯ୍ୟମାନ ସାରି, ଅନ୍ୟ ଗୃହକୁ ଯାଇ କାର୍ଯ୍ୟ କରି ଉପାର୍ଜ୍ଜନ କରୁଥିଲେ । ସେମାନେ ପ୍ରତ୍ୟହ ଯାହା ଉପାର୍ଜ୍ଜନ କରୁଥିଲେ ତାହା ଆଣି ପ୍ରଭୁପତ୍ନୀଙ୍କୁ ଦେଉଥିଲେ । ପ୍ରଭୁପତ୍ନୀ ସେହି ଅର୍ଥଦ୍ୱାରା ବହୁକଷ୍ଟରେ ସଂସାର ଚଳାଉଥିଲେ । ଏହିପରି ଏକବର୍ଷ ଅତୀତ ହେଲା ଉତ୍ତାରୁ ଦିନେ ସଂବାଦ ଆସିଲା ଯେ, ମହାଜନଙ୍କର ସମସ୍ତ ଜାହାଜ ବୁଡ଼ି ନ ଯାଇ ଖଣ୍ଡିଏ ମାତ୍ର ଜାହାଜ ବୁଡ଼ି ଯାଇଥିଲା । ଅନ୍ୟାନ୍ୟ ଜାହାଜ ପ୍ରବଳ ପବନରେ ବହୁଦୂରଦେଶକୁ ବାହାରି ଯାଇଥିଲା । ଏହି ଜାହାଜ ସବୁ ବହୁଧନ ଏବଂ ବାଣିଜ୍ୟଦ୍ରବ୍ୟମାନ ଘେନି ଲେଉଟି ଆସିଅଛି ।

ଏହି କାରଣରୁ ମହାଜନପତ୍ନୀ ପୂର୍ବପର ସୌଭାଗ୍ୟଶାଳିନୀ ହେଲେ । ସେ ସେହି ପରମବିଶ୍ୱାସୀ ଭୃତ୍ୟକୁ ଆପଣାର ପ୍ରଧାନ କର୍ମଚାରୀ ନିଯୁକ୍ତ କରି ବାଣିଜ୍ୟ କଲେ ।

ଗୃହରେ ଗୃହପାଳିତ ପଶୁପକ୍ଷୀ ଥିଲେ ସେମାନଙ୍କ ପ୍ରତି ଯତ୍ନ କରିବ । ଯତ୍ନ କରିବାର ସମୟ ନ ଥିଲେ କିମ୍ବା କ୍ଷମତା ନ ଥିଲେ ପଶୁପକ୍ଷୀ ରଖିବ ନାହିଁ । ଯଥେଷ୍ଟ ପରିମାଣରେ ଖାଇବାକୁ ଦେଲେ ପଶୁପକ୍ଷିଙ୍କ ପକ୍ଷରେ ଯଥେଷ୍ଟ ହେଲା ବୋଲି କେହି୨ ମନେ କରନ୍ତି । କେହି୨ ଗୋରୁଙ୍କୁ ଯଥେଷ୍ଟ ଖାଇବାକୁ ଦିଅନ୍ତି, ମାତ୍ର କୌଣସି ଗୁହାଳ ଅଣ୍ଠିଏ କାଦୁଅ ହୋଇଅଛି; କୌଣସି ଗୁହାଳ ଚିପ ଖାଲ ହୋଇ-ଥିବାରୁ ଗୋରୁ ଶୋଇବାକୁ କଷ୍ଟ ପାଉଅଛନ୍ତି; କୌଣସି ଗୁହାଳରେ ଧୂଅଁ ପ୍ରଭୃତି ଦିଆ ହେଉ ନ ଥିବାରୁ ଗୋରୁମାନେ ମଶା, ମାଛି, ଡାଂଶ ପ୍ରଭୃତିଙ୍କ ଜ୍ୱାଳାରେ ଅସ୍ଥିର ହେଉଅଛନ୍ତି; କୌଣସି ଗୋରୁ ଦେହରେ ଘା ହୋଇଥିବାରୁ ପୋକ ପଡ଼ିଅଛି କିମ୍ବା କାଉ ଖୁମ୍ପି ଘାକୁ ଭୟଙ୍କର କରି ପକାଉଅଛି; ଏହି ସବୁ ବିଷୟପ୍ରତି ଦୃଷ୍ଟି ରଖନ୍ତି ନାହିଁ । ପଶୁପକ୍ଷୀ ପାଳି ସେମାନଙ୍କ ପ୍ରତି ଅଯତ୍ନ ପ୍ରକାଶ କଲେ ଅତ୍ୟନ୍ତ ଅଧର୍ମ ହୁଏ । ତୁମ୍ଭେମାନେ ଦେଖିଥିବ ଗାଈକୁ ଯତ୍ନରେ ରଖିଲେ ଅଧିକ ଦୁଧ ଦିଏ ଏବଂ ଅଧିକ ଦିନ ଜୀବିତ ରହେ । ବଳଦକୁ ଯତ୍ନରେ ରଖିଲେ ଅଧିକପରିମାଣରେ କାର୍ଯ୍ୟ କରେ ।

ପଦ୍ମାବତୀ—ଆଇ, ଆଜି ଖବର କାଗଜରେ, ଏକ ସ୍ତ୍ରୀର ଆଶ୍ଚର୍ଯ୍ୟ କଥା ଲେଖା ଅଛି ।

ଆଈ,—କଣ କହିଲ ?

ପଦ୍ମାବତୀ—ବଙ୍ଗଦେଶରେ ଏକ ଗୃହସ୍ଥଙ୍କ ଶଯ୍ୟାମଧ୍ୟରେ ଡାକେ-ଇତମାନେ ପଶି, ଯେଉଁ ଘରେ ଗୃହସ୍ଥ ଏବଂ ତାହାଙ୍କ ସ୍ତ୍ରୀ ଶୋଇ-

ଥିଲେ ସେହି ଘରର କବାଟରେ ଅଘାତ କଲେ । ଗୃହସ୍ଥ ଏବଂ ତାହାଙ୍କ ସ୍ତ୍ରୀ ଡକେଇତମାନେ ଆସିଅଛନ୍ତି ଜାଣିପାରି କବାଟ ଫିଟାଇଲେ ନାହିଁ । ଡକେଇତମାନେ କବାଟ ଭାଙ୍ଗି ଘରମଧ୍ୟରେ ପ୍ରବେଶ କରିବାକୁ ଉଦ୍ୟତ ହେଲେ । ଡକେଇତମାନେ କବାଟ ଭାଙ୍ଗୁଥିବା ବେଳେ ଗୃହସ୍ଥ ପିସ୍ତଲରେ ଗୁଳି ପୂରାଇ ମାଇଲେ, ମାତ୍ର ଗୁଳି ଡକେଇତମାନଙ୍କ ଦେହରେ ବାଜିଲା ନାହିଁ । କବାଟ ଭାଙ୍ଗି ଦୁଇଜଣ ଡକେଇତ ଘରମଧ୍ୟକୁ ପଶିଲା କ୍ଷଣି, ଗୃହସ୍ଥ ଜଣେ ଡକେଇତକୁ ଲକ୍ଷ୍ୟ କରି ପୁଣି ଗୁଳି ମାଇଲେ; ମାତ୍ର ଏହି ଦ୍ୱିତୀୟ ଗୁଳି ସୁଦ୍ଧା କାହାରି ଦେହରେ ବାଜିଲା ନାହିଁ । ଜଣେ ଡକେଇତ ସେହିକ୍ଷଣି ଗୃହସ୍ଥଙ୍କୁ ହାଣିବା ସକାଶେ ଆପଣାର ଖଣ୍ଡା ଉଠାଇଲା । ଡକେଇତର ଏହି କାର୍ଯ୍ୟ ଦେଖି ଗୃହସ୍ଥଙ୍କ ସ୍ତ୍ରୀ ଖଣ୍ଡିଏ ଖଣ୍ଡା ଘେନି, ବଦ୍ୟୁତ୍‌ବେଗରେ ଯାଇ ସେହି ଡକେଇତର ମୁଣ୍ଡ ହାଣି ପକାଇଲେ । ଏହା ଦେଖି ଅନ୍ୟାନ୍ୟ ଡକେଇତମାନେ ଭୟରେ ପଳାଇ ଗଲେ । ଏହି ନର୍ଭୀକା ସ୍ତ୍ରୀ ସ୍ୱାମିର ପ୍ରାଣରକ୍ଷା ଏବଂ ସମ୍ପତ୍ତି ରକ୍ଷା କଲେ ।

ଅଣ—ମୁଁ ଏକ ସ୍ତ୍ରୀର ଆଶ୍ଚର୍ଯ୍ୟ ସାହସର କଥା କହୁଅଛି ଶୁଣ । ପଶ୍ଚିମରେ ଏକ ଧନୀବ୍ୟକ୍ତିର ଯୁବତୀ ସ୍ତ୍ରୀ ଜଣେ ଦାସୀ ସଙ୍ଗେ ଘେନି ପାଲିଙ୍କିରେ ଦିନବେଳେ ବାପଘରୁ ଶ୍ୱଶୁରଘରକୁ ଯାଉଥିଲେ । ତାଙ୍କର ବାପଘରଠାରୁ ଶ୍ୱଶୁରଘର ସାତକୋଶ ଦୂର ହେବ । ବେହେରାମାନେ ଯାଉଁ ଯାଉଁ ଏକ ନିର୍ଜ୍ଜନସ୍ଥାନରେ ଗୋଟିଏ ବଡ଼ ବରଗଛ ଦେଖି, ତାହା ତଳେ ପାଲିଙ୍କି ରଖି ଗଡ଼ାଖୁ ଖାଇବାକୁ ବସିଲେ । ଏହି ସମୟରେ ଗଛରୁ ହଠାତ୍ ଚାରିଜଣ ଡକେଇତ ଡେଇଁପଡ଼ି ବାଡ଼ି ଘେନି ବେହେରାମାନଙ୍କୁ ପ୍ରହାର କରିବାରୁ, ବେହେରାମାନେ ଭୟରେ ପାଲିଙ୍କି ଛାଡ଼ି ପଳାଇ ଗଲେ । ଦାସୀ ଏହା ଦେଖି ଭୟରେ ଚିତ୍କାର କଲାକ୍ଷଣି

ଡକେଇତମାନେ ତାହାକୁ କହିଲେ ତୋର ଯେବେ ପ୍ରାଣକୁ ଆଶା ଥାଏ ତେବେ ତୁନ ହୋଇ ରହ । ଦାସୀ ସେହିଠାରୁ ତୁନ ହୋଇ ରହିଲା । ଏହା ଉତ୍ତାରୁ ଡକେଇତମାନେ ଯୁବତୀଙ୍କୁ ପାଲିଙ୍କିରୁ ବାହାର ଆସିବାକୁ କହିଲେ । ଯୁବତୀ ସେହିପରି କଲାରୁ, ଡକେଇତମାନେ କହିଲେ—"ତୁମ୍ଭର ଯେବେ ପ୍ରାଣକୁ ମାୟା ଅଛି, ତେବେ ତୁନ ହୋଇ ଦେହରୁ ଗହଣାଯାକ କାଢ଼ି ଦିଅ, ଅମ୍ଭେମାନେ ତୁମ୍ଭ ଦେହରେ ହାତ ଦେବୁଁ ନାହିଁ ।"

ଯୁବତୀ ଆପଣା ଦେହରୁ ସମସ୍ତ ମୂଲ୍ୟବାନ୍ ଅଳଙ୍କାର କାଢ଼ି ଦେଲେ; ମାତ୍ର ସୁନାହାର ସରଏ କଣ୍ଠରୁ କାଢ଼ି ପାରଲେ ନାହିଁ । ହାର ନ ଦେଲେ ଡକେଇତମାନେ ଛାଡ଼ିବେ ନାହିଁ କହିବାରୁ, ଯୁବତୀ କହିଲେ—"ତୁମ୍ଭେମାନେ ମତେ ଖଣ୍ଡିଏ ଛୁରି ଦିଅ, ମୁଁ ବେକରୁ ହାର କାଟି ଦେଉଅଛି ।" ଡକେଇତମାନେ ସେହିକ୍ଷଣି ତାଙ୍କ ହାତକୁ ଖଣ୍ଡିଏ ଛୁରି ବଢ଼ାଇ ଦେଲେ । ଯୁବତୀ ଛୁରି ନେଇ ଡକେଇତମାନଙ୍କୁ କହିଲେ,—"ମୁଁ ଛୁରିରେ ହାର କାଟି ଦେଉଅଛି, ତୁମ୍ଭେମାନେ ମୋ ଆଗକୁ ପଛ କରି ଠିଆ ହୁଅ ।" ଡକେଇତମାନେ ସେହିପରି ଠିଆ ହେଲାରୁ, ଯୁବତୀ ଛୁରିହାସ୍ତ ପାଖରେ ଠିଆ ହୋଇଥିବା ଡକେଇତ ବେକରେ ଏପରି ବଳରେ ଆଘାତ କଲେ ଯେ ଡକେଇତ ସେହିକ୍ଷଣି ତଳେ ପଡ଼ି ଗଲା । ଅନ୍ୟ ତିନିଜଣ ଏହା ଦେଖି ଭୟରେ ପଳାଇ ଗଲେ; ମାତ୍ର ବିପରୀତ ଦିଗରୁ ଆସୁଥିବା ପଥିକମାନେ ସେମାନଙ୍କୁ ଧରି ଥାନାକୁ ନେଇ ଗଲେ । ସ୍ତ୍ରୀ ହୋଇ ଏହି ଯୁବତୀର କେମନ୍ତ ସାହସ ଶୁଣିଲ ?

ଏକ ସାଧ୍ୱୀ ସ୍ତ୍ରୀ ଆପଣାର ସ୍ୱାମିଙ୍କୁ କପଟ ଭଲ ପାଉଥିଲେ ତାହାର କଥା ଶୁଣ । ଓଡ଼ିଶାର କୌଣସି ଗ୍ରାମରେ ଏକ କରଣ ଥିଲେ ।

ତାହାଙ୍କର ସ୍ତ୍ରୀ ତାଙ୍କୁ ଯେପରି ଭକ୍ତି ସେହିପରି ସ୍ନେହ କରୁଥିଲେ । ଦିନେ ଉକ୍ତ କରଣ କୌଣସି ଦୂରସ୍ଥାନରୁ ଗୃହକୁ ପ୍ରତ୍ୟାଗମନ କାଳରେ, ସ୍ତ୍ରୀଙ୍କୁ ପରିହାସ କରିବା ଉଦ୍ଦେଶ୍ୟରେ ଭୃତ୍ୟକୁ କହିଲେ—"ତୁ ଯାଇ କାନ୍ଦିଲା ପରି ହୋଇ ଘରେ କହିବୁ ଯେ, ବାଟରେ ଅସୁର ଝାଡ଼ା-କଇରେ ସାଆନ୍ତ ମରିଗଲେ ।"

ଭୃତ୍ୟ ସେହିପରି କହିବାକୁ ଅସମ୍ମତ ହେବାରୁ, କରଣ ତାହାକୁ ବୁଝାଇ କହିଲେ—"ମୁଁ ମୋର ସ୍ତ୍ରୀ ସଙ୍ଗେ ପରିହାସ କରିବା ସକାଶେ କହୁଅଛି । ସେଥିରେ ତୋର ଦୋଷ ହେବ ନାହିଁ । ତୁ ଆଗେ ଚାଲିଯାଇ ସେହିପରି କହିବୁ, ମୁଁ ପଛେ୨ ଯାଉଅଛି ।"

ଭୃତ୍ୟ କରଣଙ୍କ ଦାଣ୍ଡଦୁଆରେ ତାଙ୍କର ସ୍ତ୍ରୀଙ୍କୁ ଠିଆ ହୋଇଥିବାର ଦେଖି, ବିଷଣ୍ଣବଦନରେ ତାଙ୍କ ପାଖରେ ଯାଇ ଠିଆ ହେଲା । କରଣଙ୍କ ସ୍ତ୍ରୀ ପଚାରିଲେ—"କିରେ ସାଆନ୍ତ କାହାନ୍ତି ?

ଭୃତ୍ୟ କାନ୍ଦିଲା ପରି ହୋଇ—"ଆଉ ସାଆନ୍ତ—" କହି ତୁନି ହେଲା ।

କରଣଙ୍କ ସ୍ତ୍ରୀ ପଚାରିଲେ—"କଅଣ କହୁଛୁ, ସାଆନ୍ତ କାହାନ୍ତି ?"

ଭୃତ୍ୟ ପୂର୍ବ ପରି କାନ୍ଦି କହିଲା—"ଆଉ ସାଆନ୍ତ କଉଠୁ ପାଇବ ? ବାଟରେ ଅସୁର ଗୋଟାଏ ଝାଡ଼ା ଗୋଟାଏ କଇରେ ତ—" । ଭୃତ୍ୟ ଆଉ କିଛି ନ କହି ତୁନି ହୋଇ ରହିଲା ।

କରଣଙ୍କ ସ୍ତ୍ରୀ ତାହା ଶୁଣି, ଆଉ କିଛି ନ କହି କବାଟକୁ ଆଉଜି ଠିଆ ହୋଇ ରହିଲେ ।

ଏହି ସମୟରେ କରଣ ଦୂରରୁ ହସି୨ ସ୍ତ୍ରୀଙ୍କ ନିକଟକୁ ଆସିଲେ । ସ୍ତ୍ରୀଙ୍କୁ ତଳକୁ ମୁହଁ କରି ଠିଆ ହୋଇଥିବାର ଦେଖି ବ୍ୟଙ୍ଗ କଲେ ।

ସ୍ତ୍ରୀଙ୍କ ହାତ ଧରନ୍ତେ ଯଣି କରଣଙ୍କ ଶରୀର ରୋମାଞ୍ଚିତ ହୋଇ ଉଠିଲା । କାରଣ ହାତ କୁଆପଥର ପରି ଶୀତଳ ହୋଇଥିଲା । ତହିଁ ଉତ୍ତାରୁ ପରୀକ୍ଷା କରି ଜାଣିଲେ, ହଠାତ୍ ଗୁରୁ ଶୋକର ପୀଡ଼ାରେ ତାଙ୍କର ପ୍ରାଣ ବାହାରି ଯାଇଅଛି । ଏହି ଅସଙ୍ଗତ ପରିହାସର ପରିଣାମରେ କର-ଣଙ୍କ ମନ କପରି ହୋଇଥିଲା ତାହା ତୁମ୍ଭେମାନେ ଅନୁମାନ କରି ବୁଝି ପାରୁଥିବ ।

ପଦ୍ମାବତୀ—ଅହା ! ଦେଖନ୍ତ କଥା ପଦକରେ ପ୍ରାଣଟା ଛାଡିଗଲା !

ଅନ୍ନ—ଅଉ ଜଣେ ସ୍ନେହଶୀଳା ସ୍ତ୍ରୀର କଥା ଶୁଣ । ଇଂଲଣ୍ଡର ଜଣେ ଡାକ୍ତର ଅଷ୍ଟ୍ରେଲିଆ ମହାଦେଶରେ ଯାଇ ବାସ କରିଥିଲେ । ଡାକ୍ତର ବହୁଲୋକଙ୍କ ଚିକିତ୍ସା କରି ଅର୍ଥୋପାର୍ଜ୍ଜନଦ୍ୱାରା ପରମସୁଖରେ ଥିଲେ । ମାତ୍ର ଚିରଦିନ କାହାରି ସୁଖରେ ଯାଏ ନାହିଁ । ଅତି-ରିକ୍ତ ପରିଶ୍ରମ ହେତୁ ଡାକ୍ତର ପୀଡ଼ିତ ହୋଇ ଶଯ୍ୟାଗତ ହେବାରୁ ତାଙ୍କର ବ୍ୟବସାୟରେ କ୍ଷତି ହେଲା । ସେ ଯେଉଁ ରୋଗିମାନଙ୍କ ଚିକିତ୍ସା କରୁଥିଲେ, ସେମାନଙ୍କ ଘରକୁ ଯାଇ ପାରିଲେ ନାହିଁ । ତାଙ୍କର ସ୍ତ୍ରୀ ସେହି ରୋଗିମାନଙ୍କ ଘରକୁ ଯାଇ ସେମାନଙ୍କ ଅବସ୍ଥା ଦେଖି ଆସି ସ୍ୱାମିଙ୍କୁ କହୁଥିଲେ, ତାହା ଶୁଣି ଡାକ୍ତର ଯେଉଁ ବ୍ୟବସ୍ଥା ପ୍ରଦାନ କରୁଥିଲେ, ତାଙ୍କର ସ୍ତ୍ରୀ ଉକ୍ତ ବ୍ୟବସ୍ଥା ସେହି ରୋଗିମାନଙ୍କୁ ଦେଇ ଆସୁଥିଲେ । ଏହି କାର୍ଯ୍ୟରେ ଡାକ୍ତରପତ୍ନୀଙ୍କୁ ପ୍ରତ୍ୟହ ୫।୬ କୋଶ ଭ୍ରମଣ କରିବାକୁ ହେଉଥିଲା । ସେ ଏହି କାର୍ଯ୍ୟ ସମ୍ପନ୍ନ କରି ପ୍ରତ୍ୟହ ସ୍ୱାମିଙ୍କ ସେବା, ପଥ୍ୟରନ୍ଧନ ଏବଂ ସଂସାରର ନିତ୍ୟନୈମିତ୍ତିକ କାର୍ଯ୍ୟ କରୁଥିଲେ । ଡାକ୍ତରପତ୍ନୀ ଉକ୍ତ ଉପାୟରେ ଯତ୍ସାମାନ୍ୟ ଅର୍ଥୋ-ପାର୍ଜ୍ଜନ କରି ଅତିକଷ୍ଟରେ ସ୍ୱାମୀ ଓ ସନ୍ତାନମାନଙ୍କର ଭରଣପୋଷଣ କରୁଥିଲେ । ଏହାର କେତେକ ଦିନ ଉତ୍ତାରୁ ତାଙ୍କର ଗୋଟିଏ

ଶିଶୁପୁତ୍ର ପୀଡ଼ିତ ହେଲା । ପୁତ୍ର ସକାଶେ ଅବଶ୍ୟକୀୟ ଔଷଧ କ୍ରୟ କରି ଆଣିବେ ତାଙ୍କର ସେପରି ସଂସ୍ଥାନ ନ ଥିଲା । ସେ ଅତ୍ୟନ୍ତ ଚିନ୍ତିତ ହୋଇ ରୋଗୀମାନଙ୍କୁ ବ୍ୟବସ୍ଥା ଦେବା ସକାଶେ ବାଟରେ ଯାଉଁ ୨ ଏକ ଡାକ୍ତରଖାନାରେ ଉପସ୍ଥିତ ହେଲେ । ସେହି ଦିନ ଏକ ଧନବାନ୍ ବ୍ୟକ୍ତି ଚିକିତ୍ସିତ ହେବା ସକାଶେ ସେହି ଡାକ୍ତରଖାନାକୁ ଆସିଥିଲେ । ତାଙ୍କର ଶରୀରର ଏକସ୍ଥାନରେ ବହୁଦିବସରୁ ଏକ କ୍ଷତ ହୋଇ, ବହୁବିଧ ଔଷଧ ପ୍ରୟୋଗରେ ସୁଦ୍ଧା ଆରୋଗ୍ୟ ହେଉ ନ ଥିଲା । ତାଙ୍କର ରୋଗ ପରୀକ୍ଷା କରି ଡାକ୍ତର କହିଲେ, କ୍ଷତସ୍ଥାନରେ, କୌଣସି ସୁସ୍ଥ ମନୁଷ୍ୟର ଚର୍ମ ସଲଗ୍ନ ନ କଲେ କ୍ଷତ ଆରୋଗ୍ୟ ହେବ ନାହିଁ । ତାହା ଶୁଣି ଧନୀ ଡାକ୍ତରଙ୍କୁ କହିଲେ—"ଶରୀରରୁ ଚର୍ମ ଦେବାକୁ ଆପଣ କୌଣସି ଲୋକଙ୍କୁ ସମ୍ମତ କରାଇ ପାରିଲେ ମୁଁ ସେହି ଲୋକଙ୍କୁ ପାଞ୍ଚଶତ ଟଙ୍କା ଦେବ ।" ଡାକ୍ତରଖାନାରେ ଉପସ୍ଥିତ ଥିବା ସମସ୍ତ ବ୍ୟକ୍ତିଙ୍କ ନିକଟରେ ଡାକ୍ତର ସେହି ପ୍ରସ୍ତାବ କଲେ, ମାତ୍ର କେହି ସମ୍ମତ ହେଲେ ନାହିଁ । ପୀଡ଼ିତ ଡାକ୍ତରଙ୍କ ସ୍ତ୍ରୀ ସେହି ପ୍ରସ୍ତାବ ଶୁଣି ହର୍ଷଚିତ୍ତରେ ଉପଯାଚକ ହୋଇ ସମ୍ମତିଦାନ କଲେ । ଡାକ୍ତର ତାହାଙ୍କ ବାହୁରୁ ଚର୍ମ କର୍ତ୍ତନ କରି ନେଇ, ଧନୀଙ୍କ କ୍ଷତରେ ସଲଗ୍ନ କଲେ । ଚର୍ମକର୍ତ୍ତନକାଳରେ ଡାକ୍ତରଙ୍କ ସ୍ତ୍ରୀ କିଞ୍ଚିନ୍ମାତ୍ର କଷ୍ଟାନୁଭବର ଚିହ୍ନ ପ୍ରକାଶ ନ କରି ବରଂ ହର୍ଷଚିତ୍ତରେ ବାହୁ ଦେଖାଇ ଉପବିଷ୍ଟା ରହିଲେ । ଧନୀ ତାଙ୍କର ଏହିପରି ଅସାଧାରଣ ସହିଷ୍ଣୁତା ଦେଖି ଚମତ୍କୃତ ହୋଇ, ପଞ୍ଚଶତ ପରିବର୍ତ୍ତରେ ସହସ୍ର ମୁଦ୍ରା ପାରିତୋଷିକ ଦାନ କଲେ । ଡାକ୍ତର ଉକ୍ତ ସ୍ତ୍ରୀଙ୍କ କ୍ଷତସ୍ଥାନରେ ଔଷଧ ପ୍ରୟୋଗ କରି ବିଦାୟ ଦେଲେ । ଡାକ୍ତରଙ୍କ ପତ୍ନୀ ଗୃହପ୍ରତ୍ୟାଗମନ କରି, ସ୍ୱାମୀ ନିକଟରେ କୌଣସି କଥା ପ୍ରକାଶ ନ କରି ନିତ୍ୟନୈମିତ୍ତିକ କାର୍ଯ୍ୟ

କଲେ ଏବଂ ଅର୍ଥବ୍ୟୟ କରି ଅଳ୍ପଦିନ ମଧ୍ୟରେ ସୁଚିକିତ୍ସାଦ୍ୱାରା ସ୍ୱାମୀ ଏବଂ ପୁତ୍ରଙ୍କୁ ଆରୋଗ୍ୟ କରାଇଲେ । ଦିନେ ସ୍ତ୍ରୀଙ୍କ ବାହୁରେ ସେହି କ୍ଷତ-ଚିହ୍ନ ଦେଖି, ଡାକ୍ତର ତାହାର କାରଣ ପଚାରିବାରୁ, ସ୍ତ୍ରୀ ଆଦ୍ୟୋ-ପାନ୍ତ ସମସ୍ତ ଘଟଣା ବର୍ଣ୍ଣନ କଲେ । ଡାକ୍ତର ସାଶ୍ରୁନୟନରେ ସ୍ତ୍ରୀଙ୍କୁ ଗାଢ଼ ଆଲିଙ୍ଗନ କରି କହିଲେ—"ତୁମ୍ଭେ ମନୁଷ୍ୟ ନୁହ, ତୁମ୍ଭେ ଦେବତା ।"

ଅଳ୍ପଦିନ ହେଲା ଏହି ମାନ୍ଦ୍ରାଜପ୍ରଦେଶର ଏକ ଡାକ୍ତରଖାନାରେ ଏକ ବାଳକ ଦୁରାରୋଗ୍ୟ କ୍ଷତରେ ଆକ୍ରାନ୍ତ ହୋଇ ଚିକିତ୍ସିତ ହେଉ-ଥିଲା । ପ୍ରତ୍ୟହ ସେହି ବାଳକର ବାଳିକା ଭଗିନୀ ଥରେ ଡାକ୍ତର-ଖାନାକୁ ଯାଇ ଭାଇକୁ ଦେଖି ଆସୁଥିଲା । ଦିନେ ବାଳିକା ଡାକ୍ତର ଖାନାକୁ ଯାଇ ଭାଇ ପାଖରେ ଠିଆ ହୋଇଅଛି, ଏମନ୍ତ ସମୟରେ ଡାକ୍ତର ଆସି ବାଳକକୁ କହିଲେ—"ଅନ୍ୟ ବ୍ୟକ୍ତିର ଶରୀରରୁ ଚର୍ମ୍ମ ନେଇ ତୁମ୍ଭର କ୍ଷତରେ ସଲଗ୍ନ ନ କଲେ , ଏହି କ୍ଷତ ଆରୋଗ୍ୟ ହେବ ନାହିଁ । ପ୍ରଚୁର ଅର୍ଥ ବ୍ୟୟ ନ କଲେ କେହି ଶରୀରରୁ ଚର୍ମ୍ମ ଦେବାକୁ ସମ୍ମତ ହେବେ ନାହିଁ ।"

ବାଳିକା ତାହା ଶୁଣି ଡାକ୍ତରଙ୍କୁ କହିଲା—ଆପଣ ମୋର ଶରୀ-ରରୁ ଯେଉଁ ସ୍ଥାନରୁ ଇଚ୍ଛା ଚର୍ମ୍ମ କାଟି ନେଇ ମୋର ଭାଇକୁ ଆରୋଗ୍ୟ କରି ଦେଉନ୍ତୁ । ଡାକ୍ତର ଆଶ୍ଚର୍ଯ୍ୟାନ୍ୱିତ ହୋଇ ବାଳିକାକୁ ପଚାରିଲେ —"ଚର୍ମ୍ମ କାଟି ନେଲେ ବଡ଼ କଷ୍ଟ ହେବ, ତୁମ୍ଭେ ତାହା ସହି ପାରିବ ?" ବାଳିକା ସହାସ୍ୟବଦନରେ କହିଲା—"ଭାଇ ଭଲ ହେବ, ମୋର ଟିକିଏ କଷ୍ଟ ହେଲେ କଅଣ ହେଲା ?"

ଡାକ୍ତର ସେହି ବାଳିକାର ଆଗ୍ରହାତିଶଯ୍ୟ ଦେଖି, ତାହାର ଶରୀ-ରରୁ ଚର୍ମ୍ମ କର୍ତ୍ତନ କରି ନେଇ ବାଳକର କ୍ଷତସ୍ଥାନରେ ସଲଗ୍ନ

କଲେ । ଚର୍ମ୍ମ କର୍ତ୍ତନକାଳରେ ଅତ୍ୟନ୍ତ କଷ୍ଟାନୁଭବ ହେଉଥିଲେ ସୁଦ୍ଧା, କାଳେ ଭାଇର ମନରେ ଦୁଃଖ ହେବ, ଏହି ଭୟରେ ବାଳିକା ଅମ୍ଳାନବଦନରେ ତାହା ସହ୍ୟ କରି, ହସି ହସି ଭାଇକୁ କହିଲା— "ଭାଇ, ଡାକ୍ତର ଏପରି ଭାବରେ ଚର୍ମ୍ମ କାଟୁଅଛନ୍ତି ଯେ ମତେ ତାହା ଜଣା ଯାଉ ନାହିଁ ।" ଏହି ସ୍ନେହଶୀଳା ବାଳିକା ହେତୁରୁ ଉକ୍ତ ବାଳକର ପ୍ରାଣରକ୍ଷା ହେଲା ।

ଆମେରିକାରେ ଏହିପରି ଏକ ସ୍ତ୍ରୀ ଆପଣାର ପୀଡ଼ିତା ମାତାର ଶୁଶ୍ରୂଷାର ବ୍ୟୟ ନିର୍ବାହ ସକାଶେ ଏକ ଡାକ୍ତରଙ୍କୁ ଆପଣାର ଦନ୍ତ ବିକ୍ରୟ କରିଥିଲେ । ଡାକ୍ତର ତାଙ୍କର ମୁଖରୁ ଗୋଟିଏ ଦନ୍ତ ଉତ୍ପାଟନ କରି ନେଇ ପ୍ରଚୁର ଧନଦାନ କରିଥିଲେ ।

ଏକ ସ୍ତ୍ରୀର ପ୍ରତ୍ୟୁତ୍ପନ୍ନମତିତ୍ୱର କଥା କହୁଅଛୁ ଶୁଣ । ଇଂଲଣ୍ଡର ଏକ ତ୍ରିତଳ ଗୃହରେ ଜଣେ ସାହେବ ତାଙ୍କର ସ୍ତ୍ରୀ ଏବଂ ଶିଶୁପୁତ୍ରକୁ ଘେନି ବାସ କରୁଥିଲେ । ଏକ ରାତ୍ରିରେ ଗୃହପାର୍ଶ୍ୱରେ ଅତ୍ୟନ୍ତ କୋଳାହଳ ଶ୍ରବଣ କରି ସାହେବ ଜାଗରିତ ହୋଇ ଦେଖିଲେ ସେହି ଗୃହର ନିମ୍ନତଳରେ ଅଗ୍ନି ସଂଯୋଗ ହୋଇଥିବାରୁ, ମନୁଷ୍ୟମାନେ ତାହା ନିବାରଣ କରିବାର ଚେଷ୍ଟା କରି କୋଳାହଳ କରୁଅଛନ୍ତି । ଅଗ୍ନି ନିର୍ବାପିତ ନ ହୋଇ କ୍ରମଶଃ ଭୟଙ୍କର ଆକାର ଧାରଣ କରିବାରୁ, ସାହେବ ସ୍ତ୍ରୀପୁତ୍ରଙ୍କ ପ୍ରାଣରକ୍ଷା କରିବାକୁ ଅକ୍ଷମ ହୋଇ ଅତ୍ୟନ୍ତ କାତର ହୋଇ ପଡ଼ିଲେ । ତାଙ୍କର ସ୍ତ୍ରୀ ତାଙ୍କୁ ସାନ୍ତ୍ୱନା କରି କହିଲେ—"ବିପଦବେଳେ ଅଧୈର୍ଯ୍ୟ କାହିଁକି ହେଉଅଛ, ଧୈର୍ଯ୍ୟ ଧର ।"

ଏହା କହି ଉକ୍ତ ସ୍ତ୍ରୀ ବିଛଣାଗୁଦର ଏବଂ ଅନ୍ୟାନ୍ୟ ଲୁଗାକୁ ଗଣ୍ଠି ଦେଇ ଦଉଡ଼ିପରି କରି, ଝରକାରେ ବାନ୍ଧି ତଳକୁ ଲମ୍ବାଇ ଦେଲେ । ତାହା ଉତ୍ତାରୁ ସ୍ୱାମିଙ୍କୁ କହିଲେ ତୁମ୍ଭେ ଆଗେ ଏହି ବାଟେ ଯାଇ ପିଲାକୁ

ରଣୀ ଅସ୍ତ୍ର । ଶାନ୍ତେବ ସେହିସ୍ତରେ କରି, ଲୁଗାଦଉଡ଼ି ସାହାଯ୍ୟରେ ପ୍ରଣୀ ଉପରକୁ ଯାଇ ସ୍ତ୍ରୀଙ୍କ ମଧ୍ୟ ଯୋନ ଅସିଲେ ।

ବୁଦ୍ଧିକଣ ଉଲ୍ଲେଖରମଣୀଙ୍କ ଅଶ୍ଚର୍ଯ୍ୟ ବିବରଣ କହି ଅଜି କଥା ଶେଷ କରିବ । ଯେଉଁ ସମୟରେ ଓଡ଼ିଶା ମରହଟ୍ଟାମାନଙ୍କ ଶାସନାଧୀନ ଥିଲା, ସେହି ସମୟରେ ଭୋଇବଂଶୀୟ ରାଜାମାନେ ଖୋରଧାରେ ରାଜପଣ କରୁଥିଲେ । ଭୋଇବଂଶୀୟ ରାଜାଙ୍କର ସର୍ବପ୍ରଧାନ କର୍ମଚାରୀଙ୍କ ଅଖ୍ୟା ବକ୍‌ଶୀ ଥିଲା । ଖୋରଧାରାଜାଙ୍କର ବକ୍‌ସୀପଦ ବଂଶାନୁକ୍ରମିକ ଥିଲା । ଯେଉଁ ସମୟର କଥା କହୁଅଛୁ, ସେହି ସମୟରେ ଖୋରଧାରାଜାଙ୍କର ଯେଉଁ ବକ୍‌ଶୀ ଥିଲେ ତାଙ୍କର ଏକ ଅନୁଜ ସହୋଦର ଥିଲେ । ବକ୍‌ସୀ ସ୍ତ୍ରୀୟ ସହୋଦରଙ୍କୁ ପ୍ରାଣାପେକ୍ଷା ଅଧିକ ସ୍ନେହ କରୁଥିଲେ । ମାତ୍ର ଅକୃତଜ୍ଞ କନିଷ୍ଠ ସହୋଦର ଅପ୍ରତିକ ଜ୍ୟେଷ୍ଠ ସହୋଦରଙ୍କୁ ଗୁପ୍ତହତ୍ୟା କରି ସ୍ୱୟଂ ବକ୍‌ସିପଦ ଅଧିକାର କରିବାର ସୁଯୋଗ ଅନ୍ୱେଷଣ କରୁଥିଲେ । ଦୁର୍ବୃତ୍ତ କନିଷ୍ଠ ସହୋଦର ଦିନେ ସୁବିଧାପ୍ରାପ୍ତ ହୋଇ ଗୋପନରେ ଜ୍ୟେଷ୍ଠ ସହୋଦରଙ୍କୁ ହତ୍ୟା କଲେ । ମୃତ ବକ୍‌ସୀଙ୍କର ପୁତ୍ର ନ ଥିବାରୁ, ରାଜା ତାଙ୍କର କନିଷ୍ଠ ସହୋଦରଙ୍କୁ ବକ୍‌ସୀପଦ ପ୍ରଦାନ କଲେ । ନବବକ୍‌ସୀ ଅଭୀଷ୍ଟସିଦ୍ଧିରେ ପରମ ଆନନ୍ଦିତ ହେଲେ । ମାତ୍ର ତାଙ୍କର ଏହି ଆନନ୍ଦ ଅଳ୍ପଦିନ ଉତ୍ତାରୁ ନିରାନନ୍ଦରେ ପରିଣତ ହେଲା । ମୃତବକ୍‌ସିଙ୍କ ଯୁବତୀ ଭାର୍ଯ୍ୟା ଅନ୍ତଃସତ୍ତ୍ୱା ଅଛନ୍ତି ଅବଗତ ହୋଇ ନବବକ୍‌ସୀ ଭୀତ ଓ ଚିନ୍ତିତ ହେଲେ । ମୃତବକ୍‌ସିଙ୍କୁ ସାଧାରଣ ପ୍ରଜାବର୍ଗ ଅତ୍ୟନ୍ତ ଭକ୍ତି କରୁଥିଲେ । ରାଜା ମଧ୍ୟ ତାହାଙ୍କ କାର୍ଯ୍ୟରେ ଅତ୍ୟନ୍ତ ପ୍ରୀତ ଥିଲେ । ବିଧବାବକ୍‌ସିପତ୍ନୀଙ୍କ ଗର୍ଭରୁ ପୁତ୍ର ଜନ୍ମ ହେଲେ, ଭବିଷ୍ୟତରେ ସେହି ପୁତ୍ର ବକ୍‌ସିପଦ ପ୍ରାପ୍ତ ହେବେ ଏଥିରେ ଆଉ କାହାରି ସନ୍ଦେହ ରହିଲା ନାହିଁ ।

ନବବକ୍ସୀ ବିବିଧ ଉପାୟରେ ଭାଗୀରଥୀର ଗର୍ଭନଷ୍ଟ କରିବାର ଚେଷ୍ଟା କରି ଅକୃତକାର୍ଯ୍ୟ ହେଲେ । ବଧବା ବକ୍ସିପତ୍ନୀଙ୍କର ଏକ ଯୁବତୀ ପରିଚାରିକା ଥିଲେ । ଏହି ଯୁବତୀ ଯେପରି ସୁନ୍ଦରୀ, ସେହିପରି ବୁଦ୍ଧିମତୀ ଓ ବିଶ୍ୱାସପାତ୍ରୀ ଥିଲେ । ଏହି ପରିଚାରିକାଙ୍କ ସତର୍କତା ହେତୁ, ନବବକ୍ସିଙ୍କ ସମସ୍ତ ଦୁରଭିସନ୍ଧି କାର୍ଯ୍ୟରେ ପରିଣତ ହୋଇ ପାରିଲା ନାହିଁ । ନବବକ୍ସୀ ଏହା ଉତ୍ତାରୁ ଭ୍ରାତୃଜାୟାଙ୍କୁ ହତ୍ୟା କରି ନିଷ୍କଣ୍ଟକ ହେବାକୁ ସଙ୍କଳ୍ପ କଲେ । ସେ ଏହି କାର୍ଯ୍ୟରେ ଘାତୁକ ନିଯୁକ୍ତ କଲେ । ଦିନେ ସନ୍ଧ୍ୟା ସମୟରେ ନବବକ୍ସୀ ଏହି ଘାତୁକ-ଦ୍ୱୟଙ୍କ ସହ ନିର୍ଜ୍ଜନସ୍ଥାନରେ ବସି, କିପରି ଏହି କାର୍ଯ୍ୟ ସମ୍ପାଦିତ ହେବ ତାହାର ପରାମର୍ଶ କରୁଥିଲେ । ପରିଚାରିକା ଏହି ସଂବାଦ ଅବଗତ ହୋଇ ପ୍ରଚ୍ଛନ୍ନଭାବରେ ସେହି ସ୍ଥାନକୁ ଗମନପୂର୍ବକ ସେମାନଙ୍କର ପରାମର୍ଶ ଶ୍ରବଣ କରି ପ୍ରଭୁପତ୍ନୀଙ୍କ ନିକଟକୁ ଗମନ କଲେ । ବକ୍ସି-ପତ୍ନୀ ପରିଚାରିକାଙ୍କୁ ଅତ୍ୟନ୍ତ ଚିନ୍ତିତା ଦେଖି, ତହିଁର କାରଣ ପଚାରି-ବାରୁ, ପରିଚାରିକା କହିଲେ—"ଆଜି ଆଉ ଉପାୟ ଦିଶୁ ନାହିଁ । ଜଗନ୍ନାଥେ କଅଣ ଆଜି ରାତି କଟାଇ ନେବେ ?"

ବକ୍ସିପତ୍ନୀ କହିଲେ ତୁ—କଅଣ କହୁଛୁ ମ ?

ପରିଚାରିକା—ବକ୍ସୀ ଆଜି ଦୁଇଜଣ ଲୋକଙ୍କୁ ଅଣାଇ ନଅର ମଧ୍ୟରେ ରଖିଛନ୍ତି । ତୁମ୍ଭେ ଆଜି ରାତିରେ ଖାଇ ଶୋଇଲେ, ସେହି ଦୁଇ ଜଣ ତୁମ୍ଭ ଘର ମଧ୍ୟରେ ପଶି ତୁମ୍ଭଙ୍କୁ ହାଣି ପକାଇବେ । ତୁମ୍ଭେ ବେଳନ୍ତୁ ନଅରରୁ ପଳାଇ ଯାଅ ।

ବକ୍ସିପତ୍ନୀ—କେଉଁ ସ୍ଥାନକୁ ପଳାଇବ ? ନେ ତବେଲେ ତାଙ୍କୁ ଏପରି କୁବୁଦ୍ଧି ଘୋଟିଲାଣି, ତେବେତେବେଲେ ଆଉ ମୋର ରକ୍ଷା ନାହିଁ । ସେ କୌଣସି ସ୍ଥାନକୁ ଯାଇ ଲୁଚି ରହିଲେ ସୁଦ୍ଧା ସେ ମୋର

ଜୀବନ ନେବ । ସାଆନ୍ତ ମଲା ଦିନରୁ ସଂସାରରେ ମୋର ଆଉ କ ସୁଖ ଅଛୁ ଯେ ବଞ୍ଚି ରହିବ ? ମତେ ମାଉବ ମାରୁ, ଏ ଜୀବନ ଗଲେ ଭଲ । ଯେଉଁବେଳେ ସେପର ସ୍ୱାଇକୁ ମାଉଲା, ତେତେ-ବେଳେ ମଂ କେଉଁ ଛାର ?

ପଉଶ୍ୱରକା—ମୁ ଦିନେ ସ୍ୱପ୍ନରେ ଦେଖିଥିଲି ତୁମ୍ଭ ଗର୍ଭରୁ ଗୋଟିଏ ସୁନ୍ଦର ପିଲା ଜନ୍ମ ହୋଇଅଛୁ, ଏବଂ ତାହାର ଆକୃତି ସାଆନ୍ତଙ୍କ ଆକୃତି ପର ହୋଇଅଛୁ । ସେହି ଦିନରୁ ମୋର ବିଶ୍ୱାସ ହୋଇଅଛୁ, ତୁମ୍ଭ ଗର୍ଭରୁ ଯେଉଁ ପିଲା ଜନ୍ମ ହେବ, ସେ ସାଆନ୍ତଙ୍କ ନାମ ରଖିବ ।

ବକ୍ସିପନ୍ନୀ—ପୁଅ ହେଲେ ସାଆନ୍ତଙ୍କ କୁଳ ରହିବ, ଏବଂ ମୁ ତାକୁ ଦେଖି ଦିନ କଟାଇବ ବୋଲି ମନେ କରଥିଲି । ଚଣ୍ଡାଳ ବନା ଦୋଷରେ ସାଆନ୍ତକୁ ମାଇଲା, ଅଜି ମତେ ବନାଦୋଷରେ ମାରବ, ତୁ ବଞ୍ଚିଥିଲେ ଦେଖିବୁ, ମହାପ୍ରଭୁ ଦିନେ ହେଲେ ଏହି କଥାର ବଗ୍ଭର କରିବେ ।

ପଉଶ୍ୱରକା—ମୁ ଗୋଟିଏ କଥା କହିବ ତୁମ୍ଭେ ମାନିବ ?

ବକ୍ସିପନ୍ନୀ—ମୁ କେଉଁ ଦିନ ତୋର କେଉଁ କଥା ନ ମାନିଛୁ ?

ପଉଶ୍ୱରକା—ଯେ ତୁମ୍ଭର ସାଆନ୍ତକୁ ମାଇଲା, ତାକୁ ଦଣ୍ଡ ଦେବାକୁ ଇଚ୍ଛା ଅଛୁ କି ନାହିଁ କହିଲ ?

ବକ୍ସିପନ୍ନୀ—ମୋର ସେ ଶକ୍ତି ଥିଲେ, ମୁ କଥଣ ଅଜିଯାଏ ଅନାଇଥାନ୍ତି ? ଇଚ୍ଛା ଥାଇ ଶକ୍ତି ନ ଥିଲେ କି ହେବ ?

ପଉଶ୍ୱରକା—ସାଆନ୍ତଙ୍କ ପୁଅ ଏହାକୁ ଦଣ୍ଡ ଦେବ । ତୁମ୍ଭେ ଅପେ ବଞ୍ଚି ଯେବେ ସେହି ପିଲାକୁ ବଞ୍ଚାଇବ ତେବେ ତୁମ୍ଭର କାମନା ପୂର୍ଣ୍ଣ ହେବ । ତୁମ୍ଭେ ଯେବେ ଅଜି ମୋ କଥା ମାନି ଗ୍ଭଲିବ, ତେବେ ସବୁ ଆଡ଼ୁ ରକ୍ଷା ହେବ ।

ବକ୍ସିପତ୍ନୀ—ତୁ ଯାହା କହିବୁ ମୁଁ ତାହା କରିବି ।

ପରଗୃହିକା—ତୁମ୍ଭେ ଭଲ ଲୁଗା ଖଣ୍ଡିଏ ଏବଂ ଗହଣା ପିନ୍ଧି, ଏହି-କ୍ଷଣି ବକ୍ସିଙ୍କୁ ଡାକି କହିବ ଯେ, ତୁମ୍ଭର ବାପାଙ୍କ ଦିହ ଦୁଃଖ ହୋଇ-ଅଛି, ତୁମ୍ଭଙ୍କୁ ସେ ଯେମନ୍ତ କାଲି ସକାଳେ ବାପ ଘରକୁ ପଠାଇ ଦିଅନ୍ତି । ତୁମ୍ଭେ ଯେତେ ଅନୁରୋଧ କର କହ ପଛକେ ସେ ତୁମ୍ଭର କଥା ମାନିବେ ନାହିଁ । ଏହା ଉତ୍ତାରୁ ଯାହା କରିବାକୁ ହେବ, ମୁଁ ପଛେ କହିବି ।

ବକ୍ସିପତ୍ନୀ ଖଣ୍ଡିଏ ଭଲ ଲୁଗା ଏବଂ ବଧବାର ବ୍ୟବହାର୍ଯ୍ୟ ଅଳ-ଙ୍କାରମାନ ପିନ୍ଧି, ବକ୍ସିଙ୍କୁ ଡାକି ଆଣି, ବାପଘରକୁ ପଠାଇ ଦେବା ନିକଟରେ ଅତ୍ୟନ୍ତ ଅନୁରୋଧ କଲେ । ମାତ୍ର ବକ୍ସି ସେଥିରେ ସମ୍ମତ ହେଲେ ନାହିଁ । ବକ୍ସିପତ୍ନୀ ପରଗୃହିକାଙ୍କୁ ତାହା କହିବାରୁ ପରଗୃହିକା କହିଲେ ମିଳ ଭୋଜନ କରିବା । ଭୋଜନ ଉତ୍ତାରୁ ପରଗୃହିକା କହିଲେ ତୁମ୍ଭେ ମୋର ଲୁଗା ପିନ୍ଧ, ତୁମ୍ଭର ଲୁଗା ଏବଂ ଅଳଙ୍କାରମାନ ମତେ ଦିଅ । ବକ୍ସିପତ୍ନୀ ସେହିପରି କଲାରୁ, ପରଗୃହିକା ବକ୍ସିପତ୍ନୀଙ୍କ ଲୁଗା ଏବଂ ଅଳଙ୍କାର ପିନ୍ଧି କହିଲେ—"ମୋର ଏହି ପ୍ରାଣ ଗଲେ ତୁମ୍ଭେ ରହିଲେ ଏହି ସଂସାରର କିଛି ଯିବ ଆସିବ ନାହିଁ । ମୋର ପ୍ରାଣ ଦେଇ ସାଆନ୍ତଙ୍କ ପିଲାକୁ ବଞ୍ଚାଇ ପାରିଲେ ଜାଣିବି ମୋର ଜନ୍ମ ସାର୍ଥକ ହେଲା । ମୁଁ ଯାଉଅଛି ତୁମ୍ଭ ପଲଙ୍କ ଉପରେ ଶୋଇବି, ତୁମ୍ଭେ ମୋ ଘରେ ଶୋଇବ ଯାଅ । ଖୁବ ପାହାନ୍ତିଆରୁ ଉଠି ବାଡ଼ିବାଟେ ବାହାରି ଯିବ ।

ବକ୍ସିପତ୍ନୀ କହିଲେ—ମୋ ଲାଗି ତୁ କାହିଁକି ପ୍ରାଣ ଦେବୁ ? ମୁଁ ଜାଣି ଶୁଣି ତତେ ହାଣକୁ ଦେଇ ପାରିବି ନାହିଁ । ଯାହା ହେବାର ହେଉ, ମୁଁ ଏପରି କାର୍ଯ୍ୟ କରି ପାରିବି ନାହିଁ ।

ପରଗୃହିକା—ମୁଁ ତୁମ୍ଭଲାଗି ପ୍ରାଣ ଦେଉ ନାହିଁ । ସାଆନ୍ତଙ୍କ ପିଲାକୁ

ବଞ୍ଚାଇବା ସକାଶେ ପ୍ରାଣ ଦେଉଅଛୁ । ଯିମ୍ନ ବାହ୍ମଲେ ଏଣ୍ଟାଙ୍କୁ ଦଣ୍ଡ ଦେଇ ପାରିବ ।

ପଚ୍ଛଗ୍ରହକା ଏହା ଉତ୍ତାରୁ ନାନାପ୍ରକାର ଉତ୍ତେଜନାଦ୍ୱାରା ବକ୍ସି-ପତ୍ନୀଙ୍କୁ ସେହି କାର୍ଯ୍ୟରେ ସମ୍ମତା କରାଇଲେ ଏବଂ କେଉଁ ବାଟେ କେଉଁ ସ୍ଥାନକୁ ଯାଇ ଅଣ୍ଡସ୍ଥ କେବେ ତାହା ମଧ୍ୟ କହି ଦେଲେ ।

ଏ ଅନ୍ତେ ନବବକ୍ସୀ ମନେ୨ ଚିନ୍ତା କଲେ ଯେ ତାହାଙ୍କ ଭ୍ରାତୃ-ଜାୟା କୌଣସି ଉପାୟରେ ତାଙ୍କର ଉଦ୍ଦେଶ୍ୟ ଅବଗତ ହୋଇ ବାପ-ଘରକୁ ଯିବାକୁ ଉଦ୍ୟତ ହୋଇଅଛନ୍ତି । ଏହି ଚିନ୍ତା କରି ଘାତୁକ-ମାନଙ୍କୁ କହିଲେ—"ଆଜି ରାତିରେ ଯେପରି ହେଉ କାର୍ଯ୍ୟ ଶେଷ କର ।"

ମଧ୍ୟରାତ୍ରିରେ ଘାତୁକଦ୍ୱୟ ବିଧବା ବକ୍ସିପତ୍ନୀଙ୍କ ଘରେ ପଶି ପରି-ଚାରିକାକୁ ହତ୍ୟା କରି, ତାଙ୍କର ମୂଲ୍ୟବାନ୍ ଲୁଗା ଏବଂ ଅଳଙ୍କାର କାଢ଼ିନେଲେ । ତାହା ଉତ୍ତାରୁ ସେହି ଶବକୁ ବଗିଚାର ଏକ ସ୍ଥାନରେ ପୋତି ତାହା ଉପରେ ଗୋଟାଏ କଦଳୀଗଛ ରୋଇ ଦେଇ, ନବବକ୍ସିଙ୍କୁ ସମ୍ବାଦ ଦେଲେ । ସେହି ଲୁଗା ଏବଂ ଅଳଙ୍କାରମାନ ଦର୍ଶନରେ ଭ୍ରାତୃ-ଜାୟାଙ୍କ ନିଧନରେ ନବବକ୍ସିଙ୍କ ଆଉ ସନ୍ଦେହ ରହିଲା ନାହିଁ । କାରଣ ସନ୍ଧ୍ୟା ସମୟରେ ଭ୍ରାତୃଜାୟାଙ୍କୁ ସେହି ଲୁଗା ଏବଂ ଅଳଙ୍କାରମାନ ପିନ୍ଧି-ଥିବାର ଦେଖିଥିଲେ । ତହିଁ ପରଦିବସ ଅନ୍ତଃପୁର ମଧ୍ୟରେ ବକ୍ସିପତ୍ନୀ ନାହାନ୍ତି ବୋଲି ସମ୍ବାଦ ପାଇ, ବାହ୍ୟିକ ବ୍ୟସ୍ତତା ପ୍ରଦର୍ଶନ କରି— "କାଲି ରାତ୍ରିରେ ବାପଘରକୁ ଯିବା ସକାଶେ କହୁଥିଲେ, ମୁଁ ମନା କରିଥିଲି, ସେ ନିଶ୍ଚୟ ବାପଘରକୁ ଯାଇଅଛନ୍ତି", କହି ସେଠାରୁ ତାଙ୍କୁ ଆଣିବା ସକାଶେ ପାଲିଙ୍କି ପଠାଇଲେ । ମାତ୍ର ପ୍ରେରିତ ଲୋକମାନେ ସେହିଠାରେ ପହୁଞ୍ଚି, ତାଙ୍କୁ ନ ପାଇ ଲେଉଟି ଆସିଲେ ।

ବକ୍ସିପତ୍ନୀ ଅରଣ୍ୟ ମଧ୍ୟ ଦେଇ ଗମନ କରି କନ୍ଦମାଳରେ ଉପସ୍ଥିତ ହେଲେ । କନ୍ଦମାଳରେ ଆପଣାର ଭଦ୍ର ପରିଚୟ ଦେଇ ଏକ କନ୍ଦପ୍ରଧାନଙ୍କ ଗୃହରେ ବାସ କଲେ । ଏହିଠାରେ ବକ୍ସିପତ୍ନୀ ଏକ ପରମସୁନ୍ଦର ବାଳକ ପ୍ରସବ କରି ତାହାର ନାମ ଜଗବନ୍ଧୁ ରଖିଲେ । ବାଳକ ଜଗବନ୍ଧୁ କନ୍ଦମାନଙ୍କ ସହବାସରେ ରହି ବିବିଧ ଅସ୍ତ୍ର ଶସ୍ତ୍ରର ବ୍ୟବହାର ଶିକ୍ଷା କଲେ । ବାଲ୍ୟକାଳରୁ ଜଗବନ୍ଧୁଙ୍କୁ ଅସାଧାରଣ ବଳଶାଳୀ ଏବଂ ବିବିଧ ଅସ୍ତ୍ର ବ୍ୟବହାରରେ ସୁନିପୁଣ ଦେଖି ବକ୍ସିପତ୍ନୀଙ୍କର ଆନନ୍ଦର ସୀମା ରହିଲା ନାହିଁ । ଜଗବନ୍ଧୁ ଅଷ୍ଟାଦଶ ବର୍ଷରେ ପଦାର୍ପଣ କଲାରୁ ବକ୍ସିପତ୍ନୀ ଉକ୍ତ କନ୍ଦପ୍ରଧାନ ଏବଂ ଜଗବନ୍ଧୁଙ୍କ ନିକଟରେ ବସାଇ ଆତ୍ମପରିଚୟ ପ୍ରଦାନ କଲେ । ସିଂହବିକ୍ରମ ଜଗବନ୍ଧୁ ପିତୃବଧ ଏବଂ ପରଗୃହକାର ଆତ୍ମବିସର୍ଜନବୃତ୍ତାନ୍ତ ଶ୍ରବଣ କରି କ୍ରୋଧରେ ପ୍ରଜ୍ୱଳିତ ହୋଇ, ସେହି ମୂହୂର୍ତ୍ତରେ ଖୋରଧା ଯାତ୍ରା କରିବାକୁ ଉଦ୍ୟତ ହେଲେ । ମାତ୍ର କନ୍ଦପ୍ରଧାନ ତାହାଙ୍କୁ ସାନ୍ତ୍ୱନା ପ୍ରଦାନ କରି, ପରଦିବସ ଗମନ କରିବାକୁ ଅନୁରୋଧ କରିବାରୁ, ଜଗବନ୍ଧୁ ପିତୃସ୍ଥାନୀୟ ପ୍ରଧାନଙ୍କ ଅନୁରୋଧ ଲଙ୍ଘନ କରି ପାରିଲେ ନାହିଁ ।

ପରଦିବସ ପ୍ରାତଃକାଳରେ ଜଗବନ୍ଧୁ ସ୍ୱୀୟ ମାତାଙ୍କ ସହ ଖୋରଧାକୁ ଯାତ୍ରା କଲେ । କନ୍ଦପ୍ରଧାନ ସେମାନଙ୍କ ସମଭିବ୍ୟାହାରରେ ଯିବା ସକାଶେ କେତେକ ଜଣ କନ୍ଦକୁ ଆଦେଶ ପ୍ରଦାନ କଲେ । ଜଗବନ୍ଧୁ ଖୋରଧା ନଗରରେ ଉପସ୍ଥିତ ହୋଇ, ମାତାଙ୍କୁ ଏକ ଗୃହସ୍ଥଙ୍କ ଗୃହରେ ରଖି, କନ୍ଦମାନଙ୍କ ସହ ନଗର ଭ୍ରମଣ କରିବାକୁ ଗମନ କଲେ । ଯେଉଁ ସମୟରେ ଜଗବନ୍ଧୁ ନଗରଭ୍ରମଣ କରୁଥିଲେ, ସେହି ସମୟରେ ରାଜା, ବକ୍ସି ଏବଂ କେତେକ ଜଣ ଅନୁଚର ସହ ଭ୍ରମଣ କରିବାକୁ ନିର୍ଗତ ହୋଇଥିଲେ । ଜଗବନ୍ଧୁ ରାଜା ଏବଂ ବକ୍ସିଙ୍କ

ପରିଚୟ୍ ପାଇ ସିଂହଗର୍ଜ୍ଜନ କରି ପ୍ରମତ୍ତମାତଙ୍ଗ ତୁଲ୍ୟ ପିତୃବ୍ୟଙ୍କୁ ଆକ୍ରମଣ କରି ନିହତ କଲେ ।

ରାଜା ଜଗବନ୍ଧୁଙ୍କ ପରିଚୟ ପ୍ରାପ୍ତ ହୋଇ ତାଙ୍କୁ ପିତୃପଦରେ ନିଯୁକ୍ତ କଲେ ।

ଆଜି ତେର କଥା କହିଲିଣି ଏହିଠାରେ ଥାଉ ।



ଏକବିଂଶ ନକ୍ସା ।

## କେତେଗୁଡ଼ିଏ ଉଦ୍ଭିଦର ବିବରଣ ।

ଅଣ—ଆଜି ତୁମ୍ଭମାନଙ୍କୁ କେତେଗୁଡ଼ିଏ ଅଶ୍ଚର୍ଯ୍ୟ ଉଦ୍ଭିଦର କଥା କହିବ । ଜନ୍ତୁମାନେ ଉଦ୍ଭିଦକୁ ଭୋଜନ କରିବାର ତୁମ୍ଭେ ଦେଖିଅଛ, ମାତ୍ର ଉଦ୍ଭିଦ ଜନ୍ତୁକୁ ଭୋଜନ କରିବାର ଦେଖି ନାହିଁ । ପାର୍ଶ୍ୱରେ ଯେଉଁ ଉଦ୍ଭିଦର ଚିତ୍ର ଦେଖୁଅଛ, ତାହାକୁ ମକ୍ଷିକାପାଶ କହନ୍ତି । ଏହି ଉଦ୍ଭିଦର ପତ୍ର ଉପରେ ମକ୍ଷିକା କିମ୍ବା ଅନ୍ୟ କୌଣସି ପତଙ୍ଗ ବସିଲା କ୍ଷଣି ଏହାର ପତ୍ର ମୁଦ୍ରିତ ହୋଇ ଯାଏ । ପତଙ୍ଗ ପତ୍ର ମଧ୍ୟରେ ରହି ଜୀର୍ଣ୍ଣ ନ ହେବା ପର୍ଯ୍ୟନ୍ତ ମୁଦ୍ରିତାବସ୍ଥାରେ ରହିଥାଏ । ଏହି ଜାତୀୟ ନାନାଶ୍ରେଣୀର ଉଦ୍ଭିଦ ଆମେରିକା ମହାଦେଶରେ ପ୍ରଚୁର ପରିମାଣରେ ଅଛି । ଭାରତବର୍ଷରେ ଭୂଇଁ ଜାତୀୟ ଏକ ପ୍ରକାର



ଉଦ୍ଭିଦ ଅଛି, ତାହାର ପତ୍ର ଉପରକୁ କୌଣସି ପତଙ୍ଗ ଗଲା କ୍ଷଣି, ପତ୍ରରେ ଅବଦ୍ଧ ହୋଇ ରହେ । ଏହି ଉଦ୍ଭିଦ ଜୀବଶରୀରଦ୍ୱାରା ସ୍ୱୀୟ ଦେହର ପୁଷ୍ଟିସାଧନ କରେ ।



ଏହିଠାରେ ଅଉ ଏକଜାତୀୟ ଉଦ୍ଭିଦର ଚିତ୍ର ପ୍ରଦତ୍ତ ହୋଇଅଛି, ଏହି ଉଦ୍ଭିଦର ପତ୍ର କଳସାକାରରେ ବର୍ଦ୍ଧିତ ହୁଏ । ଏହି ପତ୍ର ମଧ୍ୟରେ ଏକ ପ୍ରକାର ମିଷ୍ଟରସ ସଞ୍ଚାରିତ ହୁଏ । କୀଟ ପତଙ୍ଗ ମିଷ୍ଟରସ ଗନ୍ଧରେ ପତ୍ର ମଧ୍ୟରେ ପ୍ରବେଶ କଲେ ନିର୍ଗତ ହୋଇ ପାରନ୍ତି ନାହିଁ । କୀଟ ପତଙ୍ଗ ଜୀର୍ଣ୍ଣ ହୋଇ ଉଦ୍ଭିଦାଙ୍ଗ ପୁଷ୍ଟ କରନ୍ତି ।

ନିମ୍ନରେ ଯେଉଁ ବୃକ୍ଷର ଚିତ୍ର ଦେଖୁଅଛ, ତାହାକୁ ବାଓବାବ୍ ବୃକ୍ଷ କହନ୍ତି । ଅଫ୍ରିକା ମହାଦେଶରେ ଏହି ବୃକ୍ଷ ଦୃଷ୍ଟିଗୋଚର ହୁଏ ।



ଏହି ବୃକ୍ଷ ୪୦ ହସ୍ତରୁ ଅଧିକ ଉଚ୍ଚ ହୁଏ ନାହିଁ । ମାତ୍ର ଏହାର ଶାଖାମାନ ଦୂର ବିସ୍ତୃତ ହୁଏ । ଏହି ମହାବୃକ୍ଷର କାଣ୍ଡର ବେଷ୍ଟନ ଶତହସ୍ତରୁ ଅଧିକ ହୁଏ । ଏହାର କାଣ୍ଡକୁ ଶୂନ୍ୟଗର୍ଭ କରି ତିନି ଚାରିଗୋଟି ନିଗ୍ରୋ ପରିବାର* ଏକତ୍ରରେ ବାସ କରନ୍ତି ।

* ଅଫ୍ରିକାର ଅସଭ୍ୟ ଅଧିବାସୀଙ୍କୁ ନିଗ୍ରୋ କହନ୍ତି ।

ସ୍ଥଳବଶେଷରେ ଅଧିବାସିମାନେ ଏହାର କାଣ୍ଡକୁ ଶୂନ୍ୟଗର୍ଭ କରି ବୃଷ୍ଟି-ଜଳରେ ପୂର୍ଣ୍ଣ କରି ରଖିଥାନ୍ତି ଏବଂ ନିଦାଘକାଳରେ ପଥିକମାନଙ୍କୁ ଏହି ଜଳ ବିକ୍ରୟ କରି ଅର୍ଥୋପାର୍ଜ୍ଜନ କରନ୍ତି । କାଲୁର୍ଜି ପରି ଏହାର ଫଳମାନ ବୃହଦାକୃତିର ହୁଏ । ଏହି ଫଳ ବାନରମାନଙ୍କ ଅତ୍ୟନ୍ତ ପ୍ରିୟଖାଦ୍ୟ । ଏଣୁ କେହି୨ ଏହାକୁ ବାନରବୃକ୍ଷ ନାମ ଦେଇଅଛନ୍ତି ।

ଅଭ ଏକଜାତୀୟ ଉଦ୍ଭିଦକୁ ପଥିକବନ୍ଧୁ ବୃକ୍ଷ କହନ୍ତି । ଏହି ବୃକ୍ଷ ଅଫ୍ରିକାର ବାରଷ୍ଥାନ ପ୍ରଦେଶରେ ପ୍ରଚୁର ପରିମାଣରେ ଦୃଷ୍ଟିଗୋଚର



ହୁଏ । ଏହାର ପତ୍ରମାନ କଦଳୀପତ୍ର ପରି ବୃହତ୍ ହୁଏ । ପଥିକମାନେ ଯାଉଁ୨ ଯେଉଁ ସ୍ଥାନରେ ଜଳର ଅଭାବ ହୁଏ ଏହି ବୃକ୍ଷରୁ ଜଳ ନିର୍ଗତ କରାଇ ପାନ କରନ୍ତି । ଚିତ୍ରରେ ଦେଖ ଜଣେ ଅସ୍ତ୍ରଦ୍ୱାରା ବୃକ୍ଷର ଦେହ

ଭେଦ କରୁଅଛୁ, ଏବଂ ଅପର ଜଣକ ପାତ୍ର ଯେନ ଜଳ ସଞ୍ଚୟ କରୁଅଛୁ । ଏଦେଶର ଗଡ଼ଜାତମାନଙ୍କରେ ଯେଉଁ ସ୍ଥାନରେ ଜଳର ଅଭାବ ହୁଏ, ପଥିକମାନେ ସିଅଳୀଲତା କାଟି ଦେଇ, ସେଥିରୁ ନିର୍ଗତ ଜଳ ସଞ୍ଚୟ କରି ପାନ କରନ୍ତି ।



ଅଫ୍ରିକାର ଅନ୍ୟ ଏକ ଜାତୀୟ ବୃକ୍ଷକୁ ତୈଳବୃକ୍ଷ କହନ୍ତି । ପାଗବତ ଜିମ୍ବତୁଲ୍ୟ ଏହି ବୃକ୍ଷର ବହୁସଂଖ୍ୟକ ଫଳ ହୁଏ । ଏହି ଫଳ ସୁପକ୍ୱ ହେଲେ, ମନୁଷ୍ୟମାନେ ଏହି ଫଳରୁ ଅଙ୍ଗୁଳି ସାହାଯ୍ୟରେ ନିଷ୍ପେଷିତ କରି ତୈଲ କାଢ଼ି ନିଅନ୍ତି । ଏ ଦେଶରେ ପ୍ରୀନାଙ୍ଗ ପ୍ରଭୃତିରୁ ତୈଲ କାଢ଼ନ୍ତି । ମାତ୍ର ଏ ସବୁକୁ ଘଣାରେ ନ ପେଡ଼ିଲେ ତୈଲ ବାହାରେ ନାହିଁ ।



ଆଉ ଏକଜାତୀୟ ଉଦ୍ଭିଦ ଅଛି ତାହାକୁ କଳସବୃକ୍ଷ କହନ୍ତି । ଏହି ବୃକ୍ଷର ପତ୍ରର ଅଗ୍ରଭାଗ କଳସାକୃତି ହୁଏ । ଉକ୍ତ କଳସ ଜଳପୂର୍ଣ୍ଣ ଥାଏ । ଅମେରିକାର ମହାପ୍ରାନ୍ତରର ସ୍ଥଳବିଶେଷରେ ଏହି ବୃକ୍ଷ ପ୍ରଚୁର ପରିମାଣରେ ଉତ୍ପନ୍ନ ହୁଏ । ପ୍ରାନ୍ତରବାସୀ ପଶୁମାନେ ଏହି ଜଳ ପାନ କରି ପ୍ରାଣଧାରଣ କରନ୍ତି ।



ଅମେରିକାରେ ଏକଜାତୀୟ ଅଶ୍ବତ୍ଥ ବୃକ୍ଷ ଅଛି, ତାହାକୁ ରୋଟିକା ବୃକ୍ଷ କହନ୍ତି । ପାର୍ଶ୍ବରେ ରୋଟିକା ବୃକ୍ଷର ଛବି ପ୍ରଦତ୍ତ ହୋଇଅଛି । ବଡ଼ ପାଉଁରୋଟି ପରି ଏହାର ଫଳମାନ ହୁଏ । ଅଧିବାସିମାନେ ଏହି ଫଳକୁ ଦୁଇ ଖଣ୍ଡ ଉତ୍ତପ୍ତ ପ୍ରସ୍ତର ସାହାଯ୍ୟରେ ସିଦ୍ଧ କରି ଭକ୍ଷଣ କରନ୍ତି । ଏହି ଫଳ ରୋଟି ପରି ସ୍ବାଦୁ ଲାଗଇ ।

ଅମେରିକାରେ ଅଉ ଏକଜାତୀୟ ବୃକ୍ଷକୁ ଗୋପାଦପ କହନ୍ତି । ଏହି ବୃକ୍ଷରୁ ଗୋଦୁଗ୍ଧ ତୁଲ୍ୟ ଏକପ୍ରକାର କ୍ଷୀର ନିର୍ଗତ ହୁଏ ।



ଉପରେ ଆଉ ଗୋଟିଏ ଆଶ୍ଚର୍ଯ୍ୟ ବୃକ୍ଷର ଚିତ୍ର ଦେଖ । ଏହାକୁ ବୋତଲ ବୃକ୍ଷ କହନ୍ତି । ଏହି ବୃକ୍ଷର ମୂଳଦେଶ ବିପର୍ଯ୍ୟସ୍ତ ଗଙ୍ଗାଜଳୀ ବୋତଲର ଆକାର ଧାରଣ କରେ । ସେହି ବୋତଲାକୃତି ମୂଳଦେଶରୁ ପ୍ରକାଣ୍ଡ ଶାଖାମାନ ନିର୍ଗତ ହୋଇ ବୃକ୍ଷରୂପ ଧାରଣ କରେ ।



ଏକଜାତୀୟ ବୃହତ୍ ବୃକ୍ଷକୁ ଇଂରାଜିରେ ମେଙ୍ଗ୍ରୋଭ କହନ୍ତି । ଏହି ବୃକ୍ଷ ଗ୍ରୀଷ୍ମପ୍ରଦେଶର ନଦୀମୁହାଣମାନଙ୍କରେ ଉତ୍ପନ୍ନ ହୋଇ ବର୍ଦ୍ଧିତ ହୁଏ । ଏହି ବୃକ୍ଷମାନଙ୍କ ମୂଳଦେଶ ଏବଂ କାଣ୍ଡ ଜଳର ଉପରଭାଗରେ ଏବଂ ଚେରମାନ ଜଳ ନିମ୍ନଭାଗରେ ଅବସ୍ଥିତ ଥାଏ । ଏହାର ବୀଜ ଶାଖାରେ ସଂଲଗ୍ନ ଥିବା

ଅବସ୍ଥାରେ ଅଙ୍କୁରିତ ହୁଏ । ଅଙ୍କୁର ନିମ୍ନଦିଗକୁ ବର୍ଦ୍ଧିତ ହୋଇ ଜଳ ଭେଦ କରି, ଜଳ ନିମ୍ନସ୍ଥ ପଙ୍କରେ ଦୃଢ଼ରୂପେ ଆବଦ୍ଧ ହୁଏ । ଜଳର ଊର୍ଦ୍ଧ୍ୱଭାଗରେ ଅବସ୍ଥିତ ନବବୃକ୍ଷକାଣ୍ଡର ଚତୁର୍ଦ୍ଦିଗରୁ ଚେର୍ମାନ ନିର୍ଗତ ଏବଂ ପଙ୍କରେ ସୁଦୃଢ଼ଭାବରେ ଆବଦ୍ଧ ହୋଇ-ବୃକ୍ଷକୁ ତୀବ୍ର ନଦୀସ୍ରୋତ ଝଞ୍ଜା ପ୍ରବଳ ବାତ୍ୟାରୁ ରକ୍ଷା କରେ । ଏହିପରି ବୃକ୍ଷସଂଖ୍ୟା କ୍ରମଶଃ ବର୍ଦ୍ଧିତ ଏବଂ ମୂଳଦେଶରେ ପଙ୍କ ପ୍ରଭୃତି କ୍ରମଶଃ ସଞ୍ଚିତ ହୋଇ, ଜଳ ମଧ୍ୟରେ ନୂତନ ଭୂଭାଗ ସୃଷ୍ଟି ହୁଏ । ତଦନନ୍ତର ତାହା ମନୁଷ୍ୟ ଏବଂ ପଶୁପକ୍ଷିର ଆବାସସ୍ଥାନ ହୁଏ ।

ଏକଜାତୀୟ, ବୃକ୍ଷକୁ ସର୍ପବୃକ୍ଷ କହନ୍ତି । ଏହାର ମୂଳଦେଶରୁ ସର୍ପାକୃତିର ବହୁସଂଖ୍ୟକ ଚେର ନିର୍ଗତ ହୋଇ ଭୂମିରେ ପ୍ରବେଶ କରେ । ଏହି ବୃକ୍ଷ ସବୁ ବିଂଶତି ହସ୍ତରୁ ଅଧିକ ଉଚ୍ଚ ହୁଏ ନାହିଁ; ମାତ୍ର ବୃକ୍ଷର ଚେର ସ୍ଥଳବିଶେଷରେ ଶତହସ୍ତ ପର୍ଯ୍ୟନ୍ତ ଦୀର୍ଘ ହୁଏ ।

ଆଜି ଏହିଠାରେ ଥାଉ ।

